ମାମୁଁ ଉପନ୍ୟାସରେ ନାଜର ନଟବର ଦାସ ମଙ୍ଗରାଜଙ୍କ ପରି ନ ହେଲେ ମଧ୍ୟ ସେହି ଶ୍ରେଣୀର । ଧନ ସମ୍ପତ୍ତିର ମୋହ ତାଙ୍କୁ ଏତେ ଦୂର ଅନ୍ଧ କରିଛି ଯେ, ସେ ନିଜର ନାବାଳକ ଭଣଜାର ସମ୍ପତ୍ତିକୁ ହସ୍ତାନ୍ତର କରିବାକୁ ପଛେଇ ନାହାଁନ୍ତି । ଅଶିକ୍ଷିତା ପତ୍ନୀ, ଅଶିକ୍ଷିତ ଶାଳକ ଏମାନେ ମଧ୍ୟ ତାଙ୍କୁ ପତନୋନ୍ମୁଖୀ ଅବସ୍ଥାକୁ ଅଗ୍ରସର ହେବା ନିମିତ୍ତ କମ ସାହାଯ୍ୟ କରିନାହାନ୍ତି । ନଟବର ଦାସଙ୍କର ଜୀବନର ସେହି ସବୁ ପ୍ରତିପତ୍ତି, ସବୁ ଅହମିକା ସମୂଳେ ଧୋଇ ହୋଇଯାଇଛି, ଯେତେବେଳେ ସରକାରୀ ଅର୍ଥ ଆତ୍ମସାତ୍ ଅଭିଯୋଗରେ ସେ ଜେଲ୍ ଯାଇଛନ୍ତି । ଜେଲଖାନା ଭିତରେ ଆସିଛି ତାଙ୍କର ଆନୁତୋଶୋଚନା । ସେହିଠାରେ ସେ ସବ ଶତ୍ରୁମାନଙ୍କ ଉଦ୍ଦେଶ୍ୟରେ ପ୍ରାର୍ଥନା କରିଛନ୍ତି । ନିଜର ଭୁଲ୍ ସେ ନିଜେ ବୁଝିପାରିଛନ୍ତି । ଛମାଣ ଆଠ ଗୁଣ୍ଠ ଓ ମାମୁଁ ଉଭୟ ଉପନ୍ୟାସରେ ଥିବା ଗୌଣ ଚରିତ୍ରଗୁଡ଼ିକ ଫକୀରମୋହନଙ୍କ ଲେଖନୀରେ ଉତ୍ତମ ରୂପେ ରୂପାୟିତ । ପ୍ରାୟଶ୍ଚିତ ଉପନ୍ୟାସରେ ରାଜୀବଲୋଚନ, କମଳ ଲୋଚନ ପ୍ରମୁଖ ଯୁବକଗଣ ଆଧୁନିକ ଶିକ୍ଷାଭିମାନରେ ସଂସ୍କାରପ୍ରୟାସୀ ହୋଇଛନ୍ତି ।

**ନାରୀ:—**

ସମାଜରେ ବିଭିନ୍ନ ପ୍ରକାରର ନାରୀ ଦେଖାଦେଲେ ହେଁ ସେମାନଙ୍କୁ ଉପଯୁକ୍ତ ରୂପେ ରୂପାୟିତ କରିବାରେ ଫକୀର-ମୋହନ ଯଶସ୍ୱୀ ହୋଇଅଛନ୍ତି । ଏ ସଂସାରରେ ଶଶିକଳା ଓ ଚମ୍ପା ପରି ବୁଦ୍ଧିମତୀ ଓ ବିପଜ୍ଜନକ ନାରୀ, ନାକ ଫୋଡ଼ିଆ ମା ଓ ଜଗା ପଟେଇଙ୍କ ମା ପରି କଳହକାରୀ,

ସରସ୍ୱତୀ ଦେବୀଙ୍କ ପରି ପରୋପକାରିଣୀ, ସାଆନ୍ତାଣୀ (ରାମଚନ୍ଦ୍ର ମଙ୍ଗରାଜଙ୍କ ସ୍ତ୍ରୀ)ଙ୍କପରି ସହିଷ୍ଣୁ ଓ ବିଶାଖା ଦେଈଙ୍କ ପରି ସ୍ୱାର୍ଥପରାୟଣା ନାରୀ ଅନେକ ଦେଖାଯାଆନ୍ତି । ମାମୁଁ ଉପନ୍ୟାସରେ ସରସ୍ୱତୀ ଦେବୀ ଏକ ବିଶିଷ୍ଟ ଚରିତ୍ର । ନିଜର ସ୍ୱାମୀ ନିରୁଦ୍ଦିଷ୍ଟ, ସେ ସନ୍ତାନହୀନା ଓ ସଂସାରରେ ସେ ବନ୍ଧୁବାନ୍ଧବସଂପର୍କ ହୀନ, ତଥାପି ଏ ସବୁ ପ୍ରତି ତାଙ୍କର ଭ୍ରୂକ୍ଷେପ ନ ଥାଏ । ଯେ କୌଣସି କାର୍ଯ୍ୟରେ ହେଉ ନା କାହିଁକି ଦାଶରଥି ଦାସ ଓ ମେନକା ଦେଈ ତାଙ୍କଠୁ ପରାମର୍ଶ ନେଉଥିଲେ । ତାଙ୍କର ଏହି ପ୍ରବୃତ୍ତି ଉତ୍ତରବୟସ୍କଙ୍କ ଗୃହରେ ମଧ୍ୟ ଦେଖା ଦେଇଥିଲା । ପାଶ୍ଚାତ୍ୟ ଶିକ୍ଷାପ୍ରାପ୍ତ ଜମିଦାର ଉତ୍ତରବୟସ୍କ ନିଜର ପରିବାର ଓ ଜମିଦାରୀ ପରିଚାଳନା ବିଷୟରେ ସରସ୍ୱତୀଙ୍କ ସହିତ ବରାବର ପରାମର୍ଶ କରୁଥିଲେ । ସେହିପରି ସାଧୁ ସାହୁଙ୍କ ସ୍ତ୍ରୀ ଶ୍ରୀମତୀଙ୍କୁ ଗାଁ ଯାକ ମା ବୋଲି ଡାକନ୍ତି । ରୁଗ୍ଣ ,ଦରିଦ୍ର ଓ ଅସହାୟ ବ୍ୟକ୍ତିଙ୍କୁ ସାହାଯ୍ୟ କରିବା ନିମିତ୍ତ ସେ ସର୍ବଦା ତତ୍ପର ଥିଲେ । ତାଙ୍କର ସ୍ନେହ ମମତା ଓ ହାର୍ଦ୍ଦିକତା ନିଜ ପରିବାରର ସୀମା ଭିତରେ ଆବଦ୍ଧ ନ ରହି ଗୋଷ୍ଠୀର ସୀମାଭିତରେ ଆବଦ୍ଧ ଥିଲା । ନାଜର ନଟବର ଦାସଙ୍କ ସ୍ତ୍ରୀ ବିଶାଖା ଦେଈ ଥିଲେ ଅର୍ଥଲୋଭୀ, ଅଳଙ୍କାରସର୍ବସ୍ୱା ଓ ଅଭିମାନିନୀ । ଗୁରୁଜନଙ୍କୁ ଭକ୍ତି କରିବା ତାଙ୍କଠାରେ ଦେଖାଯାଏ ନାହିଁ । କେବଳ ଭୋଗ ବିଳାସର ସମ୍ଭାର ଯୋଗାଇବା ନିମିତ୍ତ ସେ ସ୍ୱାମୀଙ୍କଠାରେ ଆସକ୍ତ ଥିଲା ପରି ଜଣାପଡ଼େ । ତାଙ୍କର ଏହି ଆଚରଣ ସ୍ୱାମୀଙ୍କୁ ବିପଦଗ୍ରସ୍ତ କରିଛି ।

ଛ'ମାଣ ଆଠଗୁଣ୍ଠର ସାଆନ୍ତାଣୀ ଚରିତ୍ର ଫକୀରମୋହନଙ୍କ ସୃଷ୍ଟିରେ ଆଦର୍ଶ ସ୍ଥାନୀୟ । ସଂସାରର ପାପ ଭିତରେ ନିଜକୁ ଜଡ଼ିତ କରନ୍ତି ନାହିଁ । ଧର୍ମପ୍ରାଣା ସେ, ପତିଙ୍କଠାରେ ଥିଲା ତାଙ୍କର ଅଟଳ ଭକ୍ତି । ପରଉପକାର ଥିଲା ତାଙ୍କର ଜୀବନର ବ୍ରତ । ମଙ୍ଗରାଜଙ୍କ


Digitized by srujanika@gmail.com

ସଂସାରରେ ବିଷାକ୍ତ ବାୟୁମଣ୍ଡଳ ଭିତରେ ସେ ଅତିଷ୍ଠ ହୋଇ ପଡ଼ିଥିଲେ । ମଙ୍ଗରାଜ ଓ ଚମ୍ପାର ଅତ୍ୟାଚାରରୁ ଅନ୍ୟମାନଙ୍କୁ ରକ୍ଷା କରିବାକୁ ସେ ଚେଷ୍ଟା କରୁଥିଲେ । ଚମ୍ପା ସମ୍ମୁଖରେ ମଙ୍ଗରାଜଙ୍କଦ୍ୱାରା ଅପମାନିତା ହେଲେ ହେଁ ସେ ସବୁକୁ ସେ ସହି ଯାଇଛନ୍ତି । ଯେଉଁଦିନ ଚମ୍ପା ବାଘସିଂହ ବଂଶର ଘର ପୋଡ଼ି ଦେଇଥିଲା, ସେହି ଦିନଠାରୁ ସେ ରୋଗରେ ପଡ଼ିଥିଲେ ଓ ଶାରିଆର ମର୍ମନ୍ତୁଦ ଅବସ୍ଥାରେ ତାଙ୍କର ମୃତ୍ୟୁ ହୋଇଥିଲା । ସତେ ଯେପରି ସେ ଥିଲେ ମୂର୍ତ୍ତିମତୀ ସହିଷ୍ଣୁତା । ଚନ୍ଦ୍ରକଳା ମାମୁଁ ଉପନ୍ୟାସର କଥାବସ୍ତୁକୁ ଗତିଶୀଳ କରିବାରେ ଅଧିକ ସାହାଯ୍ୟ କରିଅଛି । ଚନ୍ଦ୍ରକଳା ଅତି ନମ୍ର, ଚତୁରୀ ଓ ବୁଦ୍ଧିମତୀ; ତଥାପି ବିଶାଖା ଦେଈଙ୍କ ଦ୍ୱାରା ନିର୍ଯ୍ୟାତିତ ନରୁବାବୁଙ୍କ ପ୍ରତି ସମ୍‌ବେଦନା ପ୍ରକାଶ କରିବା ତା ଚରିତ୍ରରେ ଏକ ବ୍ୟତିକ୍ରମ । ଚନ୍ଦ୍ରକଳା ନଟବରଦାସଙ୍କ ପରିବାରରେ ଏକ ବିଶିଷ୍ଟ ସ୍ଥାନ ଗ୍ରହଣ କରିଥିଲା, ଯେପରି କି ମଙ୍ଗରାଜଙ୍କ ପରିବାରରେ ଚମ୍ପା ନିଜର ବୈଶିଷ୍ଟ୍ୟ ଓ ପ୍ରାଧାନ୍ୟ ବିସ୍ତାର କରିଥିଲା । ଚମ୍ପାର ବୁଦ୍ଧିମତ୍ତା ଓ ଅନିଷ୍ଟକାରିଣୀ ଶକ୍ତି ଯୋଗୁଁ ବାଘସିଂହ ବଂଶର ଓ ଭଗିଆର ସଂସାରରେ ଧ୍ୱଂସର ଲୀଳା ଦେଖାଦେଇଛି । ଚମ୍ପା ଏପରି ଏକ ନାରୀ ଯେ, ସେ ତାର ଆଶ୍ରୟ-ଦାତାଙ୍କୁ ବିଶ୍ୱାସରେ ବିଷ ଦେବାକୁ ପଛେଇ ନାହିଁ । ମାମୁଁ ଉପନ୍ୟାସରେ ଗେହ୍ଲେଇ ଚରିତ୍ର ସେହିପରି ଦେଖିବାର କଥା । ଗେହ୍ଲେଇ ସତ୍ୟବାଦିନୀ, ନିର୍ଭୀକା, ଆତ୍ମ-ନିର୍ଭରଶୀଳା ଓ ପରୋପକାରିଣୀ । ନିଜର ରୂପକୁ ଚନ୍ଦ୍ରକଳା ପରି ସେ ଜୀବିକାରୂପେ ବ୍ୟବହାର କରିନାହିଁ । ତା ମୁହଁରେ ଏତେ ତଗ ଥାଏ ଯେ, ଯେ କୌଣସି କଥାର ସଂଶୋଧନ ସେ ତଗ ସାହାଯ୍ୟରେ କରୁଥିଲା । ପ୍ରାୟଶ୍ଚିତ୍ତ ଉପନ୍ୟାସରେ ମରୁଆ ଚରିତ୍ର ତ୍ୟାଗର ଏକ ବିଶିଷ୍ଟ

ଉଦାହରଣ । ନିଜର ସୁଖ ଦୁଃଖକୁ ଦୃଷ୍ଟି ନ ଦେଇ ଇନ୍ଦୁପ୍ରଭାକୁ ସୁଖୀ କରିବାରେ ସେ ସର୍ବଦା ବ୍ୟଗ୍ର । ଇନ୍ଦୁପ୍ରଭାଙ୍କ ମୃତ୍ୟୁପରେ ସେ ନିଜକୁ ଦୋଷୀ ମନେକରି ତାଙ୍କର ମୃତ୍ୟୁ ପରଠାରୁ ସନ୍ନ୍ୟାସିନୀ ଜୀବନ ଯାପନ କରିଥିଲ । ଛମାଣ ଆଠଗୁଣ୍ଠର ଶାରିଆ ଚରିତ୍ରପ୍ରତି ଦୃଷ୍ଟି ଦେଲେ ଜଣାଯାଏ, ସେ ଥିଲ ସରଳା, ନିଷ୍ପାପହୃଦୟା । ତା ସରଳବିଶ୍ୱାସର ସୁଯୋଗ ନେଇଛି ଚମ୍ପା । ସନ୍ତାନବତୀ ହେବା ଆଶାରେ ଓ ପତିର ଅନିଷ୍ଟ ହେବା ଭୟରେ ସେ ହୋଇଛି ଚମ୍ପାର ଶିକାର । ଏହି ସରଳବିଶ୍ୱାସ ହିଁ ତା ଜୀବନରେ ଦୁଃଖ ଦୁର୍ବିପାକର କାରଣ । ନିଜର ଦରିଦ୍ର ପରିବାରରେ ନିଜର ସ୍ୱାମୀ ଓ ଗାଈଟିକୁ ନେଇ ଯେଉଁ ସୁଖର ଜୀବନ ସେ ଯାପନ କରୁଥିଲା, ସେ ଜୀବନରେ ଏକ ପ୍ରଳୟଙ୍କରୀ ଝଡ଼ ରୂପେ ଆବିର୍ଭୂତ ହୋଇଥିଲା ଚମ୍ପା । ଅନାହାରରେ ପ୍ରାଣ ଦେଇଛି ଶାରିଆ । ସ୍ୱାର୍ଥପର ମଙ୍ଗରାଜ ତା ହୃଦୟର ଭାଷାକୁ ବୁଝିବାରେ ଅସମର୍ଥ ।

ଏହିପରି ଭାବରେ ଦେଖିଲେ ଫକୀରମୋହନଙ୍କ ସୃଷ୍ଟିରେ ଚରିତ୍ର ଚିତ୍ରଣରେ ବାସ୍ତବତା ସମସ୍ତେ ଅନୁଭବ କରିପାରିବେ । ଯେଉଁ ଫକୀରମୋହନ ରାମଚନ୍ଦ୍ର ମଙ୍ଗରାଜ ପରି ଶଠ, ଧୂର୍ତ୍ତ, ପ୍ରବଞ୍ଚକକୁ ଚିହ୍ନିପାରିଥିଲେ, ତାହାଙ୍କର ଲେଖନୀ ଅନ୍ୟମାନଙ୍କୁ ଚିହ୍ନିବାରେ କେବେହେଲେ ଭୁଲ୍ କରି ନ ପାରେ ।

---

## (୮) ଫକୀରମୋହନଙ୍କ ବର୍ଣ୍ଣନା ବିଳାସ

ଫକୀରମୋହନଙ୍କ ସାହିତ୍ୟରେ ଯେଉଁପ୍ରକାର ବର୍ଣ୍ଣନା-ବିଳାସ ଦେଖାଯାଏ, ତାହା ତାଙ୍କ ନିଜସ୍ୱ । ତାଙ୍କର ଉପନ୍ୟାସ ଗୁଡ଼ିକର ଭାଷା ଓ ଭାବ ପାଠକର ହୃଦୟଗ୍ରାହୀ । ଛମାଣ ଆଠଗୁଣ୍ଠ ଉପନ୍ୟାସ

ଆରମ୍ଭରୁ ଶେଷପର୍ଯ୍ୟନ୍ତ ଏପରି ଭାବରେ ବର୍ଣ୍ଣିତ ଯେ, ପ୍ରତ୍ୟେକ ଛତ୍ରରେ ହାସ୍ୟରସର ଅବକାଶ ମିଳିଲେ ହେଁ କଥାବସ୍ତୁଗତ ବଳିଷ୍ଠତା ପାଠକକୁ ହସିବାର ଅବକାଶ ନ ଦେଇ ପାଠକ-ହୃଦୟରେ ମର୍ଯ୍ୟାଦିତ ପ୍ରତି ସମବେଦନା ଜାଗ୍ରତ କରାଏ । ଯେଉଁ ସ୍ଥାନରେ ତାଙ୍କର କିଛି କହିବାର ଥାଏ, ସେ ସ୍ଥାନରେ ସେ କିଛି ନ କହିଲାପରି ଛଳନା କରନ୍ତି । ଅନ୍ତଃପୁରର ମହିଳା-ମାନଙ୍କ ବିଷୟ କହିବାକୁ ଯାଇ ସେ କହନ୍ତି ଯେ, ଅନ୍ତଃପୁରର ମହିଳାମାନଙ୍କ ବିଷୟରେ କହିବା ଶାସ୍ତ୍ରସମ୍ମତ ନୁହେଁ । ତେଣୁ ସେ ବିଶେଷ କିଛି କହିବେ ନାହିଁ; ମାତ୍ର ପ୍ରକୃତରେ ସେ ବିଷୟ ସେ ଏତେ କହନ୍ତି ଯେ, କୌଣସି ଟିକିଏ ବାକି ରହେ ନାହିଁ । ଚମ୍ପାର ସୌନ୍ଦର୍ଯ୍ୟ ବର୍ଣ୍ଣନାରେ ସେତେ ଯେପରି ଅତି ନମ୍ରଭାବରେ ସେ ଜଣେ ପରମରୂପବତୀ ଯୁବତୀଙ୍କର ରୂପ ବର୍ଣ୍ଣନା କରୁଛନ୍ତି; ମାତ୍ର ଏହି ବର୍ଣ୍ଣନା ଭିତରେ ବ୍ୟଙ୍ଗବିଦ୍ରୂପର ମାତ୍ରା ଏତେ ବେଶୀ ଯେ ପାଠକ ଏହି ବର୍ଣ୍ଣନାରୁ ଚମ୍ପାର ସମ୍ୟକ୍ ପରିଚୟ ପାଇ-ଯାଏ । ବାଘସିଂହ ବଂଶର ଘର ପୋଡ଼ିବାକୁ ଚମ୍ପା ଯେତେବେଳେ ଠାଙ୍ଗୀ ମାଉସୀରୂପରେ ଯାଇଛି, ସେତେବେଳକାର ବର୍ଣ୍ଣନା ଏତେ ଜୀବନ୍ତ ହୋଇଛି ଯେ ଚମ୍ପା ଏପରି ଏକ ଦୁରଭିସନ୍ଧି ରଖି ଘାନକମ ସକାଶେ ପ୍ରେରିତ ବୋଲି କେହି ଜାଣିପାରିବ ନାହିଁ ।

ଲଛମା ଉପନ୍ୟାସରେ ସୋସୋ ଗ୍ରାମର ବର୍ଣ୍ଣନା ଅତୀବ ହୃଦୟଗ୍ରାହୀ ହୋଇଅଛି । ଏହି ଗ୍ରାମର ବର୍ଣ୍ଣନା ପାଠ କଲେ ପାଠକ ସମ୍ମୁଖରେ ଉତ୍କଳର ରମଣୀୟ ପ୍ରକୃତି ପ୍ରତିଭାତ ହୁଏ । ଲଛମା ଉପନ୍ୟାସରେ କଥାବସ୍ତୁର ଅଗ୍ରଗତି ସହିତ ବର୍ଣ୍ଣନା-ବଳୀର ବଳିଷ୍ଠତା ଯୋଗୁଁ ଉପନ୍ୟାସର ମର୍ଯ୍ୟାଦା ରକ୍ଷିତ ହୋଇ ପାରିଛି । ମାମୁଁ ଉପନ୍ୟାସରେ ଯୁଗଳକିଶୋର ମନ୍ଦିରରେ

ହରିଲୁଟ୍ ବର୍ଣ୍ଣନା, ଚିଲିକାର ଓ ବଣାଖା ଦେବଙ୍କର କାଳ ସମ୍ପୁର ବର୍ଣ୍ଣନା ଓ ପଣ୍ଡିତ-ସଭାର ବର୍ଣ୍ଣନା ଯେ କୌଣସି ପାଠକଙ୍କୁ ମୁଗ୍ଧ କରିବ, ଏଥିରେ ସନ୍ଦେହ ନାହିଁ ।

ଫକୀରମୋହନଙ୍କ କ୍ଷୁଦ୍ରଗଳ୍ପରେ ମଧ୍ୟ ବର୍ଣ୍ଣନା-ବିଳାସର ପ୍ରାଚୁର୍ଯ୍ୟ ପରିଲକ୍ଷିତ ହୁଏ । କ୍ଷୁଦ୍ର ଗଳ୍ପରେ ବର୍ଣ୍ଣନା-ବିଳାସର ପ୍ରାଚୁର୍ଯ୍ୟ ଦୋଷାବହ ହେଲେ ହେଁ ତାଙ୍କୁ ସେ ଏଡ଼ିପାରି ନାହାନ୍ତି । ରଣ୍ଡିପୁଅ ଅନନ୍ତା ଗଳ୍ପରେ ଫକୀରମୋହନ ବର୍ଣ୍ଣନା-ବିଳାସରେ ଭାସିଯାଇ ଗଳ୍ପର ମର୍ଯ୍ୟାଦାକୁ କ୍ଷୁଣ୍ଣ କରିଛନ୍ତି । ଅଧର୍ମବିତ୍ତ ଓ ସଭ୍ୟ ଜମିଦାର ଗଳ୍ପରେ ସେହିପରି ବର୍ଣ୍ଣନା ବାହୁଲ୍ୟ ଦେଖାଦେଇଛି ।

ଫକୀରମୋହନଙ୍କ ଆତ୍ମଚରିତରେ ତାଙ୍କ ଜୀବନ କାଳରେ ଘଟିଥିବା ଘଟଣାଗୁଡ଼ିକ ଏପରି ଭାବରେ ବର୍ଣ୍ଣିତ ହୋଇଛି ଯେ, ପାଠକ ମନେକରିବ, ଏହା ଯେପରି ଏକ କାଳ୍ପନିକ ଉପନ୍ୟାସ । ସତ୍ୟ ଘଟଣାକୁ ବର୍ଣ୍ଣନା କରିବାର କୌଶଳ ସେ ଏପରି ପ୍ରଦର୍ଶନ କରିଛନ୍ତି ଯେ, ଅନେକ ସମୟରେ ପାଠକ ମନେକରେ ଏହା କଣ ଫକୀରମୋହନଙ୍କ ନିଜ ଜୀବନକଥା ନା ଉପନ୍ୟାସର କାଳ୍ପନିକ କଥାବସ୍ତୁ ।

ଗଦ୍ୟ ବିଭାଗକୁ ଛାଡ଼ିଦେଲେ ସେନାପତିଙ୍କର ପଦ୍ୟ ବିଭାଗର ଶୈଳୀ ବିଚାର କରିବାର କଥା । ମୁଁ ହାଟେବାଦ୍ଧଡ଼ା କବିତାରେ ତାଙ୍କର ସମସାମୟିକ ଯୁଗରୁଚି ପ୍ରତି ମନୋଭାବ ସ୍ପଷ୍ଟ ଭାବରେ ପ୍ରକାଶ ପାଇଛି । ଏହି ପ୍ରକାଶରେ ସ୍ୱାତନ୍ତ୍ର୍ୟ ଅଛି । ସମସାମୟିକ ଯୁଗରୁଚିକୁ ଲକ୍ଷ୍ୟ କରି ରାଧାନାଥ ,ଏବଂ ଗଙ୍ଗାଧର

ବ୍ୟଙ୍ଗାତ୍ମକ କବିତା ଲେଖିଥିଲେ ହେଁ ସେନାପତିଙ୍କର ଉକ୍ତ କବିତା ଏକ ନିର୍ଦ୍ଦିଷ୍ଟ ଦୃଷ୍ଟି-କୋଣର ପରିଚୟ ଦିଏ । ଉତ୍କଳ ଭ୍ରମଣଂରେ ଫକୀରମୋହନ ଏ ଦେଶର ଗୁଣୀ ସନ୍ତାନମାନଙ୍କର ନିର୍ଭୀକ ସମାଲୋଚନା କରିଅଛନ୍ତି । ଉତ୍କଳ ଭ୍ରମଣଂରେ ସେ ଯେଉଁ ଉତ୍କୃଷ୍ଟ ଦୃଷ୍ଟିକୋଣର ପରିଚୟ ଦେଇଥିଲେ, ତାହା ତାଙ୍କ ପରବର୍ତ୍ତୀ ରଚନାମାନଙ୍କରେ ବିକଶିତ ହୋଇଅଛି । ଫକୀରମୋହନଙ୍କର ଅବସର ବାସରେ ଓ ବୌଦ୍ଧାବତାର କାବ୍ୟ ପ୍ରଭୃତି କବିତା ଗୁଡ଼ିକରେ ତାଙ୍କ ସ୍ୱତନ୍ତ୍ର ଶୈଳୀର ପରିଚୟ ମିଳେ । ଗଦ୍ୟ ଏବଂ ପଦ୍ୟ ଉଭୟ ବିଭାଗରେ ସେନାପତି-ଶୈଳୀର କୃତିବିଦ୍ୟତା ଏବେ ମଧ୍ୟ ଅବଧାରଣୀୟ । ତାଙ୍କର ଉପନ୍ୟାସଶୈଳୀ ଆଜିପର୍ଯ୍ୟନ୍ତ ଓଡ଼ିଆ ଉପନ୍ୟାସ ରାଜ୍ୟରେ ଅନତିକ୍ରମ୍ୟ । ତାଙ୍କର ଶୈଳୀରେ ମୁଗ୍ଧ ହୋଇ ସ୍ୱର୍ଗତ ଗୋପାଳଚନ୍ଦ୍ର ପ୍ରହରାଜ ତାଙ୍କୁ ଅନୁସରଣ କରିଥିଲେ । ଗୋପାଳଚନ୍ଦ୍ରଙ୍କର ଶୈଳୀ ଫକୀରମୋହନଙ୍କୁ ଅନୁସରଣ କରିଛି ସତ; କିନ୍ତୁ ତାଙ୍କ ଶୈଳୀର ସମକକ୍ଷ ହୋଇପାରି ନାହିଁ । ଏହିଦୃଷ୍ଟିରୁ ଫକୀରମୋହନ ଅଜେୟ ।



## (୯) ଫକୀରମୋହନଙ୍କ ସାହିତ୍ୟରେ ସମାଜ ସଂସ୍କାର

ଏ ଦେଶରେ ଇଂରେଜ ଶାସନ ପ୍ରଚଳିତ ହେବାର ୪୦ ବର୍ଷ ପରେ ଫକୀରମୋହନ ସେନାପତିଙ୍କର ଜନ୍ମ । ଇଂରେଜ ଶାସନ ପୂର୍ବରୁ ମରହଟ୍ଟା ଶାସନ ସମୟରେ ଦେଶର ଗଣଜୀବନରେ ନିରାପତ୍ତାର କୌଣସି ସୂଚନା ନ ଥିଲା । ବର୍ଗୀ ଅତ୍ୟାଚାରରେ ସାଧାରଣ ଧନଜୀବନ ସବୁବେଳେ ବିପନ୍ନ ଅବସ୍ଥାରେ ଥିଲା । ୧୮୦୩ ସାଲରେ ଇଂରେଜମାନେ ଏ ଦେଶକୁ ଦଖଲ କରିବା ପରେ ଦେଶରେ ରାଜନୈତିକ ସ୍ଥିରତା ଦେଖାଯିବା ସଙ୍ଗେ ସଙ୍ଗେ ସାଧାରଣ

ଧନଜୀବନର ନବୀପତ୍ରି ପ୍ରତି ଶାସକଗୋଷ୍ଠୀର ଦୃଷ୍ଟି ରହିଲା । ଦୀର୍ଘକାଳ ଧରି ଅତ୍ୟାଚାରିତ ଲାଞ୍ଛିତ ଗଣଜୀବନରେ ସ୍ଥିରତା ଲକ୍ଷିତ ହେଲା ।

ଇଂରେଜମାନେ ଏ ଦେଶକୁ ଶାସନ କରିବା ସଙ୍ଗେ ସଙ୍ଗେ ଦେଶର ଶିକ୍ଷା ଓ ସଂସ୍କୃତି ଉପରେ ପ୍ରଭାବ ପକାଇବାକୁ ସମର୍ଥ ହୋଇଥିଲେ । ତେଣୁ ବିଦେଶୀ ସରକାର ତଥା ବିଦେଶୀ ସଭ୍ୟତା ସଂସ୍ପର୍ଶରେ ଆସି ଏ ଦେଶର ଜନସାଧାରଣ ସଭ୍ୟ ଓ ଶିକ୍ଷିତ ହେବା ସଙ୍ଗେ ସଙ୍ଗେ ବିଦେଶୀ ପ୍ରାଧାନ୍ୟକୁ ସ୍ୱୀକାର କଲେ । ଇଂରେଜୀ ଶିକ୍ଷା ଓ ଭାଷାର ଅଧ୍ୟୟନ ସଙ୍ଗେ ସଙ୍ଗେ ରୁଚିର ପରିବର୍ତ୍ତନ ଏପରି ଭାବରେ ଦେଖାଦେଲା ଯେ, ଭାରତୀୟମାନେ ନିଜର ସ୍ୱାତନ୍ତ୍ର୍ୟ ଭୁଲି ବିଦେଶୀ ଗୃହକର୍ତ୍ତାଙ୍କର ଅନୁକରଣ କଲେ । ତେଣୁ ଭାରତୀୟ ଜନ-ଜୀବନରେ ଧାର୍ମିକ, ସାମାଜିକ, ସାଂସ୍କୃତିକ ଓ ରାଜନୈତିକ ସ୍ତରରେ ଏକ ଚୂଡ଼ାନ୍ତ ପରିବର୍ତ୍ତନର ସୂତ୍ରପାତ ହେଲା । ଭାରତୀୟ ନିଜ ଜାତୀୟତାକୁ ଭୁଲିଯାଇ କେବଳ ସାହେବୀ ଆଭିଜାତ୍ୟରେ ନିଜକୁ ଭୂଷିତ କରିବାକୁ ଲାଗିଲା । କେବଳ ଓଡ଼ିଶା ନୁହେଁ, ସମଗ୍ର ଭାରତୀୟ ଜୀବନରେ ଏହିପରି ଏକ ସଙ୍କଟ ସନ୍ଧିରେ ୧୮୪୩ ସାଲରେ ଫକୀରମୋହନଙ୍କର ଜନ୍ମ । ବାଲ୍ୟାବସ୍ଥାରୁ ଫକୀରମୋହନ ଦେଖିବାକୁ ପାଇଥିଲେ, ଆମ ସମାଜରେ 'ଦେଶୀ' ଓ 'ବିଦେଶୀ'ର କାରବାର । ତେଣୁ ତାଙ୍କର ପରବର୍ତ୍ତୀ ଜୀବନରେ ଯେତେବେଳେ ସେ ସାହିତ୍ୟ-ସାଧନାରେ ଲିପ୍ତ ଥିଲେ, ସେତେବେଳେ ଦେଶର ଏହି ଦୁର୍ବିପାକ ଲାଗି ସେ ଅନେକବାର କ୍ଷୋଭ ପ୍ରକାଶ କରିଛନ୍ତି । ତାଙ୍କ ଜୀବନରେ ନ'ଅଙ୍କ ଦୁର୍ଭିକ୍ଷ ଓ ଓଡ଼ିଆ ଭାଷା ଆନ୍ଦୋଳନ ଦୁଇଟି ସ୍ମରଣୀୟ ଘଟଣା । ଏହି ଦୁଇଟି ଘଟଣା ଲାଗି ଫକୀରମୋହନ ଯାହା କହିଛନ୍ତି ବା କରିଛନ୍ତି, ସେଥିରୁ ତାଙ୍କର ଜାତୀୟତାର ପ୍ରମାଣ

ଯଥେଷ୍ଟ ଭାବରେ ମିଳେ । କେବଳ ବାଲେଶ୍ୱର ନୁହେଁ, ଓଡ଼ିଶାର ବିଭିନ୍ନ ସ୍ଥାନରେ ଜୀବିକାନିର୍ବାହ ଉଦ୍ଦେଶ୍ୟରେ ଯେତେବେଳେ ସେ କାଳାତିପାତ କରିଛନ୍ତି, ସେତେବେଳେ ବିଭିନ୍ନ ପ୍ରକାର ସାମାଜିକ କ୍ରିୟାକଳାପ ସମ୍ପର୍କରେ ସେ ଆସିଛନ୍ତି । ତେଣୁ ତାଙ୍କ ରଚନାରେ ସମାଜର ବିଭିନ୍ନ ପ୍ରକାର କ୍ରିୟାକଳାପର ବର୍ଣ୍ଣନା ଅଛି ।

ଓଡ଼ିଶାରେ ପାଶ୍ଚାତ୍ୟ ଶିକ୍ଷା କି ପ୍ରକାର ବିଷମୟ ପରିସ୍ଥିତିର ସୃଷ୍ଟି କରିଥିଲା ସେ ବିଷୟରେ ଫକୀରମୋହନ 'ମୁଁ ହାଟ ବାହୁଡ଼ା' କବିତାରେ ଲେଖିଛନ୍ତି । ବିଦେଶୀ ଦ୍ରବ୍ୟର ଆଦର ସମାଜରେ ଯଥେଷ୍ଟ ବେଶୀ । ଦେଶୀ ଜିନିଷର ଆଦର ଆଜି ନାହିଁ । ଯେଉଁ ଅବଧାନ ଦେଶୀୟ ରୀତିରେ ଶିକ୍ଷାଦାନ କରେ, ସେ ଏ ଯୁଗରେ ଖାଇବାକୁ ନ ପାଇ ମରିବା ସାର ହୁଏ । ମାତ୍ର ଯେ କୋଟ୍ ପ୍ୟାଣ୍ଟ ପିନ୍ଧି ସେକ୍ସପିଅର, ବାଇରେନ୍‌ଙ୍କ କଥା ପଢ଼ାଏ, ତାର କଳେବର ପୃଥୁଳାକାର ଧାରଣ କରେ । ଦେଶର ପ୍ରତ୍ୟେକ ସ୍ଥାନରେ ଏପରି ଅବସ୍ଥା ଲକ୍ଷ୍ୟ କରି ସେ ମର୍ମାହତ ହୋଇଛନ୍ତି ଏବଂ ଲେଖିଛନ୍ତି—

"ପିଲାଏ ଖାଆନ୍ତି ଏ ସବୁ ଫଳ । ବାପ ଟଙ୍କା ଗଣିଦିଏ କେବଳ ।
ଏ ସବୁ ଫଳର ଗୁଣ ଓଲଟା । ହୁଏ ଦେହ ସରୁ ବୁଦ୍ଧି ଟା ମୋଟା ।
ମାତ୍ରକ ହଜମ ଯେ କରିଜାଣେ । ଜଗତ ଜିଣେ ସେ ଆପଣା ଜ୍ଞାନେ ।
ଅଳପ ଖାଇଲେ ଘଟେ ଜଞ୍ଜାଳ । ବହୁତ ଖାଇଲେ ଫିଟେ କପାଳ ।"

ଫକୀରମୋହନଙ୍କ ଉପନ୍ୟାସରେ ତାଙ୍କର ସଂସ୍କାର-ଲିପ୍ସା ଛକେ ଛକେ ଦେଖା ଦେଇଛି । ସମାଜରେ ଜାତିଆଣ ପ୍ରଥାର ଯେଉଁ ଅଯଥା ଦୃଢ଼ତା ଦେଖାଯାଏ, ସେ ବିଷୟରେ ସେ ଆଲୋକପାତ କରିଛନ୍ତି । ଜଣେ ଲୋକ କିଛି ଭୁଲ କଲେ ତାକୁ ଜାତିରୁ ଅଟକ କରିବା ଓ ସେ ଅଯଥା ଖର୍ଚ୍ଚାନ୍ତ ହୋଇ ପ୍ରାୟଶ୍ଚିତ୍ତ କରିବା ପରେ

ପୁଣି ଜାତିରେ ମିଶାଇବା ନୀତି ଆମ ସମାଜ ପକ୍ଷରେ ନିତାନ୍ତ କ୍ଷତି-କାରକ । ରାମଚନ୍ଦ୍ର ମଙ୍ଗରାଜ ଶ୍ୟାମ ମଲ୍ଲଙ୍କୁ ପିଆଜ ଓ କୋବି ଖାଇଥିବା ଯୋଗୁଁ ଜାତିରୁ ବାସନ୍ଦ କରିଥିଲେ । ଶ୍ୟାମ ମଲ୍ଲଙ୍କଠାରୁ ୧୫ ମାଣ ଜମି ନେଇ ପୁଣି ତାଙ୍କୁ ଜାତିରେ ମିଶାଇଲେ । ଏଥିରୁ ରାମଚନ୍ଦ୍ର ମଙ୍ଗରାଜଙ୍କ ଚରିତ୍ରରେ ପରଧନ ଲୋଲୁପ ଦୃଷ୍ଟି ଯେତିକି ମିଳୁଛି, ସମାଜର ଅଯଥା ରକ୍ଷଣଶୀଳ ପ୍ରଥାର ପରିଚୟ ସେତିକି ମିଳୁଛି ।

ନିଜର ଜାତିଗୁଡ଼ିକୁ ବଜାୟ ରଖିବା ନିମିତ୍ତ ଏ ଦେଶର ଲୋକମାନେ ଯେଉଁ ଅଯଥା ଅହମିକା ଦେଖାନ୍ତି, ଫକୀରମୋହନ ସେମାନଙ୍କ ପ୍ରତି ବ୍ୟଙ୍ଗବାଣ ପ୍ରୟୋଗ କରିଛନ୍ତି । କରଣମାନଙ୍କର ସମାଜରେ ପ୍ରାଧାନ୍ୟ ଦେଖାଯାଇଥାଏ । ଏ ପ୍ରାଧାନ୍ୟର କାରଣ ସେମାନେ "ଚୋରି ଗଣି" ରୋଜଗାର କରିବାରେ ସମର୍ଥ । ଖଣ୍ଡାୟତମାନେ ନିଜକୁ ଯୁଦ୍ଧ ବିଦ୍ୟାନିପୁଣ ଏକ ଶକ୍ତିଶାଳୀ ଜାତି ରୂପେ ଭାବିଲେ ହେଁ ସେମାନଙ୍କର ଏହି ଅହମିକାର ଭାବନା ସେମାନଙ୍କୁ ପତନମୁଖରେ ପକାଇଛି । ସାଧାରଣ କଥାରେ, ସାଧାରଣ କଳିରେ ସେମାନେ ଠେଙ୍ଗାବାଡ଼ି ଉଠାଇ ନିଜ ଶକ୍ତିର ଅପଚୟ କରିବା ଫଳରେ ସେମାନଙ୍କଠାରୁ ସେ ଶକ୍ତି ଆଜି ଦୂରରେ । ଗଉଡ଼ମାନେ ନିଜ ଜାତିଗୁଡ଼ିକୁ ନେଇ ଯେତେ ଗର୍ବ କଲେ ହେଁ ଦୁଧରେ ଟୋପାଏ ହେଲେ ପାଣି ମିଶାଇବା ସେମାନଙ୍କର ପୁରୁଷଗତ ବ୍ୟବସାୟ । ବ୍ରାହ୍ମଣମାନଙ୍କର ଅଧଃପତନରେ ଫକୀରମୋହନ ସେହିପରି ଦୁଃଖିତ ହୋଇଛନ୍ତି । ଧର୍ମ, ଜ୍ଞାନ ଏବଂ ଶାସ୍ତ୍ରରେ ପାରଦର୍ଶିତା ଲାଭ କରିଥିବା, ଜାତି, ବର୍ଣ୍ଣାଶ୍ରମରେ ଉଚ୍ଚତମ ସ୍ଥାନ ଅଧିକାର କରିଥିବା ବ୍ରାହ୍ମଣମାନଙ୍କର ଅବସ୍ଥା ଆଜି

ସମାଜରେ ନିତାନ୍ତ ହେୟ । ବ୍ରାହ୍ମଣମାନେ ଆଜକାଲି ନିଜର କୁଳବ୍ୟବସାୟ ଭୁଲି କେବଳ ପରସ୍ଵାପହରଣକାରୀ ରୂପେ ଜୀବନ ନିର୍ବାହ କରୁଛନ୍ତି । ଯଜମାନ ଘର ଶୃଗାଳ ଏବଂ ମୃତାହ କ୍ରିୟାର ଭୋଜନ ସେମାନଙ୍କର ଅବଲମ୍ବନର ପ୍ରଧାନ କାରଣ ହୋଇଅଛି । ବଳି ବାଛିବା, ବଳିରୁ ମାଛ ମାରିବାରେ ସେମାନେ ଯେତେ ଧୁରନ୍ଧର କର୍ମକାଣ୍ଡ ପ୍ରତି ଆଦୌ ନୁହନ୍ତି । ଫକୀରମୋହନ ବ୍ୟଙ୍ଗରୂପ ପ୍ରୟୋଗ କରି ବ୍ରାହ୍ମଣମାନଙ୍କୁ ସମାଲୋଚନା କରିଥିଲେ ହେଁ ବ୍ରାହ୍ମଣମାନଙ୍କର ଅଧଃପତନରେ ଦୁଃଖ ପ୍ରକାଶ କରି ବ୍ରାହ୍ମଣ ସମାଜର ସଂସ୍କାର ଇଚ୍ଛା କରିଛନ୍ତି ।

ଅର୍ଥଲୋଭୀ ପିଶାଚମାନଙ୍କର ସମାଜରେ ପ୍ରତିପତ୍ତି ଓ କ୍ରିୟାକଳାପରେ ଫକୀରମୋହନ ସଂସ୍କାର ଆଣିବା ନିମିତ୍ତ ଚେଷ୍ଟା କରିଛନ୍ତି । ରାମଚନ୍ଦ୍ର ମଙ୍ଗରାଜ ଓ ନାଜର ନଟବର ଦାସ ଏହାର ଜ୍ଵଳନ୍ତ ପ୍ରମାଣ । ରାମଚନ୍ଦ୍ର ମଙ୍ଗରାଜ ପରଧନ ଅପହରଣ କରିବାରେ ଯେଉଁ ପନ୍ଥା ଗ୍ରହଣ କରିଛନ୍ତି, ସେ ପନ୍ଥା ନଟବର ଦାସଙ୍କ ପନ୍ଥାଠାରୁ ଭିନ୍ନ । ଏହାର କାରଣ ରାମଚନ୍ଦ୍ର ମଙ୍ଗରାଜଙ୍କର ସମୟ ଓ ନଟବର ଦାସଙ୍କର ସମୟ ଭିନ୍ନ ।

ନାରୀମାନଙ୍କର ସମାଜରେ ଅବସ୍ଥା ଭିନ୍ନତା ଦୃଷ୍ଟିରୁ କ୍ରିୟାକଳାପ ଦେଖି ଫକୀରମୋହନ ଅନେକ ସମୟରେ କ୍ଷୁବ୍ଧ ହୋଇଛନ୍ତି । ଛମାଣ ଆଠଗୁଣ୍ଠ, ମାମୁଁ, ଲଛମା, ପ୍ରାୟଶ୍ଚିତ୍ତ ଓ ଫକୀରମୋହନଙ୍କ ଅନେକ ଗଳ୍ପରେ ଏହା ଅନେକସ୍ଥ ପ୍ରକାଶିତ । ଛମାଣ ଆଠଗୁଣ୍ଠରେ ଚମ୍ପା, ମରୁଆ, ଚନ୍ଦକଳା ଏମାନଙ୍କ ଚରିତ୍ର ଅତି ଦୂଷଣୀୟ ଭାବରେ ଚିତ୍ରିତ । ଅବସ୍ଥା-ଚକ୍ରରେ ପଡ଼ିଲେ ନାରୀମାନେ ଯେ କେତେ ଭୟଙ୍କର ହୋଇ

ପାରନ୍ତି, ତାହା ଫକୀରମୋହନ ଦେଖାଇଛନ୍ତି । ମରୁଆ ଚରିତ୍ରଟିକୁ ଏଠାରେ ଧରିନିଆଯାଉ । ବାଲ୍ୟ ବୈଧବ୍ୟ ପରେ ଲଳିତା ଦାସ ବାବାଜୀଙ୍କ ସଙ୍ଗରେ ପଳାଇଆସି ସେ ତେଲେଙ୍ଗା ବଜାରରେ ଥିଲି । ମଙ୍ଗରାଜେ ମକଦ୍ଦମା କାର୍ଯ୍ୟରେ କଟକ ଆସି ତେଲେଙ୍ଗା ବଜାରରୁ ତାକୁ ନେଇ ତାଙ୍କ ଘରେ ସ୍ଥାନ ଦେଇଥିଲେ । ଏଥିରୁ ଜଣାଯାଏ, ସମାଜରେ ବିଧବାମାନଙ୍କୁ ପତିତା ହେବା ପାଇଁ ପରୋକ୍ଷରେ ସୁଯୋଗ ଦିଆଯାଉଛି । ଲଳିତାଦାସ ବାବାଜୀଙ୍କ ସଙ୍ଗେ ଆସି ମରୁଆ ରହିଛି ତେଲେଙ୍ଗା ବଜାରରେ । କଟକରେ ତେଲେଙ୍ଗା ବଜାରରେ ଏପରି ଅବସ୍ଥାରେ ରହିବାର ତାତ୍ପର୍ଯ୍ୟ ଯଥେଷ୍ଟ ଅଛି । ସେତେବେଳେ ତେଲେଙ୍ଗାବଜାର ରୂପଜୀବାମାନଙ୍କର କେନ୍ଦ୍ର ଥିଲି । ଏହି ରୂପଜୀବା କେନ୍ଦ୍ରକୁ ମଙ୍ଗରାଜଙ୍କର ଯିବାଆସିବା କରିବା ଏଠାରେ ମଙ୍ଗରାଜଚରିତ୍ରର ଏକ ଦିଗ ପ୍ରଦର୍ଶନ କରି-ଅଛି । ଭଣ୍ଡ ସନ୍ନ୍ୟାସୀମାନଙ୍କର ସମାଜରେ କୁକର୍ମ କରିବା କଥା ଏଥିରୁ ମଧ୍ୟ ପ୍ରକାଶ ପାଉଛି । ଧୂଳିଆ ବାବା ଗଳ୍ପରେ ଏହି ସତ୍ୟର ଉନ୍ମୋଚନ ହୋଇଅଛି । ଅଶିକ୍ଷିତ ଅନ୍ଧବିଶ୍ୱାସୀ ଜନ-ସାଧାରଣ ଏମାନଙ୍କ ଉପରେ ଯେଉଁ ଆସ୍ଥା ସ୍ଥାପନ କରନ୍ତି, ତାହା କେବଳ ବିଶ୍ୱାସରେ ବିଷ ଦେବାର କାର୍ଯ୍ୟ କରେ । ରେବତୀ ଗଳ୍ପରେ ସ୍ତ୍ରୀ ଶିକ୍ଷାପ୍ରତି ସମାଜର ଦୃଷ୍ଟି ସ୍ପଷ୍ଟତର ଭାବରେ ପ୍ରକାଶ ପାଇଛି । ଗାରୁଡ଼ିମନ୍ତ୍ରରେ ନାରୀମାନଙ୍କର ଅଯଥା ଆଡ଼ ହେବା ରୀତିର ବିରୁଦ୍ଧାଚରଣ କରାଯାଇଛି । ଫକୀରମୋହନଙ୍କ ଉପନ୍ୟାସରେ ଗାଁ ପୋଖରୀ ତୁଠରେ ସ୍ତ୍ରୀ ଲୋକମାନଙ୍କର ପରଚର୍ଚ୍ଚା କରିବା ସମୟରେ ଲେଖକ ଅଯଥା ପରଚର୍ଚ୍ଚାରେ ସମୟ ନଷ୍ଟ କରିବା ବିରୁଦ୍ଧରେ ପରୋକ୍ଷ ଭାବରେ ମତ ଦେଇଛନ୍ତି । ମଦ୍ୟପାନ ଆମ ସମାଜରେ ଏକ କଳଙ୍କ

ସଦ୍ଗୁଣ ଦେଖା ଦେଇଛି । ମଦ୍ୟପାନରୁ ସ୍ୱାମୀଙ୍କୁ ବିରତ କରିବା ନିମନ୍ତେ ସୁଲୋଚନା ଯେଉଁ ପେଟେଣ୍ଟ ମେଡ଼ିସିନ୍ ବ୍ୟବହାର କରିଛନ୍ତି, ସେଥିରେ ପ୍ରୟୋଗ ପ୍ରଣାଳୀ କରୁଣ ହେଲେ ହେଁ ପରିଣତି ମଙ୍ଗଳକର ହୋଇଅଛି ।

ଶାସନ କ୍ଷେତ୍ରରେ ଫକୀରମୋହନଙ୍କର ପ୍ରତ୍ୟକ୍ଷ ସମ୍ପର୍କ ଥିଲା । ଜୀବିକା ନିର୍ବାହ କରିବା ନିମିତ୍ତ ଓଡ଼ିଶାର ବିଭିନ୍ନ ଷ୍ଟେଟ୍‌ରେ ଦେଓ୍ୱାନୀ କରିବା ସମୟରେ ଶାସନକଳର ଦୋଷ ଦୁର୍ବଳତା ସେ ହୃଦୟଙ୍ଗମ କରିପାରିଥିଲେ । ସରକାରୀ ଶାସନ କ୍ଷେତ୍ରରେ ସରକାରୀ କର୍ମଚାରୀମାନଙ୍କର ଏକଚ୍ଛତ୍ର ନୀତିକୁ ସେ ସମର୍ଥନ କରି-ନାହାନ୍ତି । ଛ'ମାଣ ଆଠଗୁଣ୍ଠରେ ପୋଲିସ-ସମ୍ପୃକ୍ତ ବର୍ଣ୍ଣନାରେ ପୋଲିସମାନଙ୍କର କାର୍ଯ୍ୟକଳାପକୁ ଯେପରି ଭାବରେ ଲେଖକ ବର୍ଣ୍ଣନା କରିଛନ୍ତି, ସେଥିରୁ ଇଂରେଜ ରାଜତ୍ୱ ସମୟରେ ପୋଲିସ୍ ବିଭାଗର ଶକ୍ତିର ପରିଚୟ ମିଳିଲେ ହେଁ ଏଥିପ୍ରତି ଫକୀର ମୋହନଙ୍କର ପ୍ରଚ୍ଛନ୍ନ ବିଦ୍ରୂପ ଥିବାର ପରିଲକ୍ଷିତ ହୁଏ । ତତ୍କାଳୀନ ନବ୍ୟଶିକ୍ଷିତ ଯୁବକ ଶ୍ରେଣୀର ମନୋବୃତ୍ତିକୁ ଫକୀରମୋହନ ଅତି ସୁନ୍ଦର ରୂପେ ଚିହ୍ନି ପାରିଥିଲେ । ପ୍ରାୟଶ୍ଚିତ୍ତ ଉପନ୍ୟାସରେ ସେ ଏହି ଶିକ୍ଷିତ ଶ୍ରେଣୀର ମନୋବୃତ୍ତି ପ୍ରକାଶ କରିଅଛନ୍ତି । ନୂଆ ଭାବରେ ଶିକ୍ଷାପାଇ ପୁରୁଣା ଦିନର ଅନ୍ଧପରଂପରାରୁ ବିଶ୍ୱାସ ହରାଇ ନୂଆ ବାଟରେ ଜୀବନକୁ ପରିଚାଳିତ କରିବା ନିମିତ୍ତ ଏହି ଶିକ୍ଷିତ ଶ୍ରେଣୀର ମନୋବୃତ୍ତି ପ୍ରଶଂସାର୍ହ ହେଲେ ହେଁ ଏମାନଙ୍କର ଆଦର୍ଶର ବଳିଷ୍ଠତା ନ ଥିଲା । ବିବାହ ପ୍ରସଙ୍ଗରେ ପୁରାତନ ଜ୍ୟୋତିଷ-ବିଦ୍ୟାକୁ ଅବଜ୍ଞା କରି ଦେଖି ରାହୁଁ ବିବାହ କରିବାକୁ ଏହି ଯୁବକ ଶ୍ରେଣୀଉଚିତ ମନେ କରିଛି । ଆଧୁନିକତା

କେବଳ ବହ୍ୱାଡ଼ମ୍ବରରେ ପର୍ଯ୍ୟବସିତ ହୋଇ ରହିଛି । ଜୀବନର ଅନ୍ୟାନ୍ୟ ପରିସରରେ ଆଧୁନିକତାର ଆରୋପ ନାହିଁ । ଜ୍ୟୋତିଷ-ବିଦ୍ୟାର ଅସାରତା ଦେଖାଇବାକୁ ଯାଇ ଫକୀରମୋହନ ଅଶିକ୍ଷିତ ଜ୍ୟୋତିଷମାନଙ୍କୁ ବିଦ୍ରୂପ କରିଅଛନ୍ତି । ଡାକମୁନ୍‌ସି ଗଳ୍ପରେ ଏହିପରି ଗୋଟିଏ ତଥାକଥିତ ଶିକ୍ଷିତ ଯୁବକର ମନୋବୃତ୍ତିର ଯଥାର୍ଥ ପରିଚୟ ମିଳିଅଛି ।

ଦେଶ ଓ ଜାତିର ଅଧଃପତନରେ ବ୍ୟଥିତ ଫକୀର-ମୋହନ ସମାଜର ପ୍ରତ୍ୟେକ ସ୍ତରର କ୍ରିୟା କଳାପକୁ ଲକ୍ଷ୍ୟ କରି ସେ ସବୁର ସଂସ୍କାର ନିମନ୍ତେ ତାଙ୍କର ସୃଷ୍ଟି ସମ୍ପଦ ଭିତରେ ସୂଚନା ଦେଇଅଛନ୍ତି ।



## (୧୦) ଫକୀରମୋହନଙ୍କ ଆତ୍ମ-ଜୀବନଚରିତ

ବ୍ୟାସକବି ଫକୀରମୋହନଙ୍କର ଆତ୍ମ-ଜୀବନ-ଚରିତ ଯେ କୌଣସି ପାଠକର ମନକୁ ଆକର୍ଷଣ କରେ । ଫକୀରମୋହନ ନିଜ ହାତରେ ନିଜର ଜୀବନ-ଚରିତ ଲେଖି ଉତ୍କଳ-ସାହିତ୍ୟରେ ପ୍ରକାଶ କରୁଥିଲେ । ଫକୀରମୋହନଙ୍କ ଲେଖନୀରେ ଏପରି ଗୋଟିଏ ଯାଦୁକରୀ ସ୍ପର୍ଶ ଥିଲା ଯେ, ସେ ଯାହା ଲେଖୁଥିଲେ ତାହା ସୁଖ-ପାଠ୍ୟ ହେଉଥିଲା । ତେଣୁ ତାଙ୍କର ଆତ୍ମ-ଜୀବନଚରିତରେ ବର୍ଣ୍ଣିତ ଘଟଣାଗୁଡ଼ିକ ଏପରି ଭାବରେ ରୂପାୟିତ ହୋଇଛି ଯେ, ପାଠକ ଏହାକୁ ଏକ ଆତ୍ମଜୀବନଚରିତ ନ ଭାବି ଏକ ସରସ ଉପନ୍ୟାସ ବା କାହାଣୀ ରୂପେ ଭାବିଥାଏ ।

ମରହଟ୍ଟା ଶାସନ କାଳରୁ ତାଙ୍କର ବଂଶଲତାର ପରିଚୟ ସେ ଦେଇଛନ୍ତି । ଇଷ୍ଟ ଇଣ୍ଡିଆ କଂପାନୀ ବାଲେଶ୍ୱର ଅଧିକାର କରିବା ସମୟର ଚିତ୍ର ସେ ଦେଇଛନ୍ତି । ତାଙ୍କର ଠାକୁର ମା କୁଚିଲା ଦେଈ ୧୮୦୩ ସାଲରେ ଏହି ଘଟଣା ପ୍ରତ୍ୟକ୍ଷ ଦେଖିଥିଲେ । ତାଙ୍କଠାରୁ ଶୁଣି ଫକୀରମୋହନ ଲେଖିଛନ୍ତି, ଇଷ୍ଟଇଣ୍ଡିଆ କଂପାନୀର ଫୌଜ ଦକ୍ଷିଣ ଏବଂ ପୂର୍ବ ଦୁଇ ଦିଗରୁ ବାଲେଶ୍ୱରକୁ ଆସିଲେ । ଇଷ୍ଟଇଣ୍ଡିଆ କଂପାନୀର ଫୌଜ ବାଲେଶ୍ୱରର ପୂର୍ବାଞ୍ଚଳ ବଲରାମଗଡ଼ି ନାମକ ସ୍ଥାନରେ ପହଞ୍ଚିବା ସମ୍ବାଦ ପାଇ ଗ୍ରାମବାସୀମାନେ ଘରଦ୍ୱାର ଛାଡ଼ି ପରିବାର ନେଇ ଜଙ୍ଗଲକୁ ପଳାଇଲେ । କଂପାନୀ ଫୌଜ ବାଲେଶ୍ୱର ଅଧିକାର କରିବା ପରେ ଶାନ୍ତି ସ୍ଥାପିତ ହେଲା ଓ କଂପାନୀର ଅଭୟ ବାଣୀ ପାଇ ଗ୍ରାମବାସୀମାନେ ନିଜ ନିଜ ଘରକୁ ଫେରି ଆସିଲେ । କେବଳ ଇଷ୍ଟ ଇଣ୍ଡିଆ କଂପାନୀ ସମୟର କଥା ନୁହେଁ, ଗ୍ରାମର ଅତି ବୁଢ଼ା-ମାନଙ୍କଠାରୁ ଲେଖକ ମରହଟ୍ଟା ସମୟର ଅନେକ କଥା ଶୁଣି ଲେଖିଛନ୍ତି । ମରହଟ୍ଟା ଶାସନର ଅବସାନ ସମୟରେ ଦେଶରେ ଏପରି ଅରାଜକତା ବ୍ୟାପିଥିଲା ଯେ ଚୋର, ଡକାୟତ ଓ ନାଗା ସନ୍ନ୍ୟାସୀମାନଙ୍କ ଉପଦ୍ରବରେ ଲୋକମାନେ ଧ୍ୱସ୍ତ ବିଧ୍ୱସ୍ତ ହୋଇଥିଲେ । ଇଷ୍ଟ ଇଣ୍ଡିଆ କଂପାନୀର ଶାସନରେ ଧନ ଜୀବନର ନିରାପତ୍ତା ରକ୍ଷା ହୋଇଥିଲା । ନିଜର ଶୈଶବ, ବିଦ୍ୟାରମ୍ଭ ବିଷୟ ଲେଖିସାରି ଲେଖକ ଅଫିଲ ସିନ୍‌ଇ ଓ ନିମକ ମାହାଲରେ କାର୍ଯ୍ୟ ଶିଖି ଥିଲେ । ନିମକ ମାହାଲ ଉଠିଯିବାପରେ ଲେଖକ ବାରବାଟୀ ସ୍କୁଲରେ ଅଧ୍ୟୟନ ଓ ଅଧ୍ୟାପନା କରିଥିଲେ । ବାରବାଟୀ ସ୍କୁଲରେ ପାଠ ପଢ଼ିବା ସମୟରେ ହରେକୃଷ୍ଣ ପାଣିଗ୍ରାହୀ ନାମକ ଜଣେ ଓଡ଼ିଆ ପଣ୍ଡିତଙ୍କର ପାଠ ପଢ଼ାଇବା ପ୍ରଣାଳୀ ସେ ଲେଖିଛନ୍ତି । "କୌଣସି

ବନରେ ଗୋଟିଏ କାକ ଖଣ୍ଡିଏ ମାଂସ ମୁଖରେ ଧରି ଗୋଟାଏ ବୃକ୍ଷ ଡାଳରେ ବସିଥିଲା ।" ଶିକ୍ଷକ ଏହାକୁ ବୁଝାଉଥିଲେ—"କୌଣସି ବନରେ କି କେହି ଅଛନ୍ତିରେ, 'ଗୋଟିଏ କାକ କି ଏକ ଗୋଟି ବାୟସ, ଖଣ୍ଡିଏ ମାଂସ କି ଖଣ୍ଡିଏ ପଲ, ମୁଖରେ ଧରି କି ବଦନରେ ଧାରଣ କରି, ଗୋଟାଏ ବୃକ୍ଷ କି ଏକଗୋଟି ମହୀରୁହ, ଡାଳରେ କି ଶାଖାରେ ବସିଥିଲା କି ଉପବେଶନ କରିଥିଲା ।" ଓଡ଼ିଆ ପଣ୍ଡିତମାନଙ୍କର ଶିକ୍ଷାଦାନ ପଦ୍ଧତିକୁ ସେ ଏହିପରି ଭାବରେ ସମାଲୋଚନାତ୍ମକ ଦୃଷ୍ଟିକୋଣରେ ପ୍ରକାଶ କରିଅଛନ୍ତି । ସେ ବାରବାଟୀ ସ୍କୁଲରେ ପଢୁଥିବା ସମୟରେ ରାଧାନାଥ ରାୟ ଏଣ୍ଟ୍ରାନ୍ସ୍ ପାଶ୍ କରିଥିଲେ (୧୮୬୩) । ୧୮୬୪ ସାଲରେ ବାଲେଶ୍ୱର ମିସନ୍ ସ୍କୁଲରେ ଫକୀରମୋହନ ପ୍ରଧାନ ଶିକ୍ଷକରୂପେ ମାସିକ ଦଶଟଙ୍କା ବେତନରେ ଯୋଗଦେଲେ । ଏହିଠାରେ ଶିକ୍ଷକତା କରୁଥିବା ସମୟରେ ବାଇବେଲର ଓଡ଼ିଆ ଅନୁବାଦ ସଂଶୋଧନ କରିବାକୁ ଯାଇ ମିଲର ସାହେବଙ୍କର ରୋଷ ଦୃଷ୍ଟିରେ ପଡ଼ିଥିଲେ । ପୂର୍ବ ଅନୁବାଦ ଥିଲା—"ଅଛନ୍ତି ଏପରି ଢେର ଲୋକ ପୃଥିବୀରେ ଯେଉଁମାନେ ବିଶ୍ୱାସ କଲେ ନାହିଁ ଅଛନ୍ତି ପରମେଶ୍ୱର ଜଗତରେ ।" ଫକୀରମୋହନ ଲେଖିଲେ, "ପରମେଶ୍ୱରଙ୍କର ଅସ୍ତିତ୍ୱ ଅସ୍ୱୀକାର କରନ୍ତି ଏପ୍ରକାର ଲୋକ ପୃଥିବୀରେ ଅନେକ ଅଛନ୍ତି ।" ଏହି ଧାଡ଼ିଟି ଶୁଣି ଭିକାରୀବାବୁ ରାଗରେ ଅସ୍ଥିର ହୋଇପଡ଼ିଲେ । 'ଅସ୍ତିତ୍ୱ' ର ଅର୍ଥ ନ ଜାଣି ଈଶ୍ୱରଙ୍କର ଅସ୍ଥି ବୋଲି ଧରି ନେଇ ଫକୀରମୋହନଙ୍କ ପ୍ରତି କ୍ରୋଧ ପ୍ରଦର୍ଶନ କଲେ । ଯେତେ ବୁଝାଇଲେ ହେଁ ଭିକାରୀବାବୁ ବା ମିଲର ସାହେବ କେହି ତାଙ୍କ କଥା ବୁଝିଲେ ନାହିଁ । ସାହେବଙ୍କର ଧର୍ମପ୍ରଚାରର ଭାଷା ଫକୀରମୋହନ ଲେଖିଛନ୍ତି—"ଏ ବାଇମାନେ, ତୁମ୍ଭମାନଙ୍କ ଜଗନ୍ନାଥ କାଷ୍ଠ ଅଛି,

ପାଷାଣ ଅଛୁ, ସେ କଛୁ ନୁହେଁ । ତାଙ୍କୁ ଭଜିଲେ ଅନନ୍ତ ନରକରେ ପଡ଼ିବ । ପ୍ରଭୁ ଯୀଶୁଖ୍ରୀଷ୍ଟ ପ୍ରାଣକର୍ତ୍ତା ଅଟନ୍ତି । ତାଙ୍କୁ ଭଜିଲେ ଆଲୁଅ ପାଇବ ।" କେହି ଯେବେ ସାହେବଙ୍କ କଥାର ପ୍ରତିବାଦ କରେ, ରାଗିଯାଇ ସାହେବ ଆଗରେ ଯାହାକୁ ପାଆନ୍ତି ଘୋଡ଼ା ଚାବୁକରେ ପିଟନ୍ତି । ଫଳରେ ଫୌଜଦାରୀ ମକଦ୍ଦମା ଦାୟେର୍ ହୁଏ । ଫକୀରମୋହନଙ୍କ ଏହି ବର୍ଣ୍ଣନାରୁ ସେ ସମୟରେ ଓଡ଼ିଶାରେ ଖ୍ରୀଷ୍ଟଧର୍ମ ପ୍ରଚାରର ବାସ୍ତବରୂପ ଦେଖାଯାଏ । ସେହି ସମୟରେ ବାଲେଶ୍ୱର ଜିଲ୍ଲାର କଲେକ୍ଟର ଜନ ବୀମ୍ସ ତାଙ୍କର **Comparative Grammar of Indian Languages** ଲେଖିଥିଲେ । ସେ ସମୟରେ ବାଲେଶ୍ୱରରେ ଓଡ଼ିଆ ଏବଂ ବଙ୍ଗାଳୀମାନଙ୍କର ବିବାଦ ଯଥେଷ୍ଟ ଥିଲା । ହାଲିମ୍ ସାହେବଙ୍କର ସାହାଯ୍ୟ ସହାନୁଭୂତି ଫକୀରମୋହନଙ୍କ ଶିକ୍ଷକ-ଜୀବନରେ ସ୍ମରଣ କରିବାର କଥା । ୧୮୬୬ ସାଲରେ ଓଡ଼ିଶାରେ ଭୀଷଣ ନଅଙ୍କ ଦୁର୍ଭିକ୍ଷର ବର୍ଣ୍ଣନା ଫକୀରମୋହନ ପ୍ରତ୍ୟକ୍ଷଦର୍ଶୀ ଭାବରେ ଦେଇଅଛନ୍ତି । ୧୮୬୮ ସାଲରେ ସେ ବାଲେଶ୍ୱରରେ ପ୍ରଥମ ଛାପାଖାନା ସ୍ଥାପନ କରିଥିଲେ । ଜୀବନରେ ୧୮୫୬ ଏବଂ ୧୮୭୧ରେ ଦୁଇଥର ତାଙ୍କୁ ବିବାହ କରିବାକୁ ପଡ଼ିଥିଲା । ୧୮୭୧ରୁ ୧୮୭୫ପର୍ଯ୍ୟନ୍ତ ଫକୀରମୋହନ ନୀଳଗିରି, ୧୮୭୬ରୁ ୧୮୭୭ଯାଏ ଡମପଡ଼ାରେ ଦେୱାନୀ କରିଥିଲେ । ଏହି ସମୟର ଅନେକ ଘଟଣା ସେ ବର୍ଣ୍ଣନା କରିଛନ୍ତି । ୧୮୭୭ରୁ ୧୮୮୩ପର୍ଯ୍ୟନ୍ତ ଢେଙ୍କାନାଳର ଆସିଷ୍ଟାଣ୍ଟ୍ ମ୍ୟାନେଜର ରୂପେ ରହିବାପରେ ୧୮୮୪ରୁ୧୮୮୬ ପର୍ଯ୍ୟନ୍ତ ଦଶପଲ୍ଲାର ଦେୱାନ ହେଲେ । ଦଶପଲ୍ଲା ଛାଡ଼ି ୧୮୮୬-୮୭ ରେ ପୁଣି ପାଲଲହଡ଼ାରେ ଦେୱାନ ହେଲେ । ୧୮୮୭ରୁ୧୮୯୨ପର୍ଯ୍ୟନ୍ତ କେନ୍ଦୁଝରରେ ମ୍ୟାନେଜର ରହିଲେ । ୧୮୯୧-୯୨ସାଲରେ କେନ୍ଦୁଝରର ବିଦ୍ରୋହ

ଦକ୍ଷତାର ସହିତ ବର୍ଣ୍ଣନା କରିଅଛନ୍ତି । ୧୮୯୪ ରୁ ୧୮୯୭ ପର୍ଯ୍ୟନ୍ତ ଡମପଡ଼ାରେ ଦିତୀୟ ଥର ଦେୱାନ ହେଲେ । ୧୮୯୭ରୁ ୧୯୦୫ ସାଲ ପର୍ଯ୍ୟନ୍ତ ଫକୀରମୋହନ କଟକରେ ଅବସ୍ଥାନ କରିଛନ୍ତି ଏବଂ ୧୯୦୫ରୁ ୧୯୧୮ସାଲ ପର୍ଯ୍ୟନ୍ତ ବାଲେଶ୍ୱରରେ କଟାଇଛନ୍ତି ।

ଫକୀରମୋହନଙ୍କ କର୍ମମୟ ଜୀବନରେ ବିଭିନ୍ନ ସ୍ଥାନର ଅନୁଭୂତି, ଶାସନକାର୍ଯ୍ୟ ସମୟରେ ବିଭିନ୍ନ ସ୍ଥାନର ଅଭିଜ୍ଞତା, ବିଭିନ୍ନ ଶ୍ରେଣୀର ଲୋକମାନଙ୍କ ସହିତ ସମ୍ପର୍କ ସ୍ଥାପନ ପ୍ରଭୃତି ତାଙ୍କର ସୃଷ୍ଟି ସମ୍ପଦ ଲାଗି ଯଥେଷ୍ଟ ପ୍ରେରଣା ଦାନ କରିଅଛି । ତାଙ୍କର ଆତ୍ମଜୀବନଚରିତରେ ବର୍ଣ୍ଣିତ ଘଟଣାବଳୀ ଯେ କେବଳ ତାଙ୍କର ଜୀବନକୁ କେନ୍ଦ୍ର କରି ଲିଖିତ, ତା ନୁହେଁ, ଦେଶ ଓ ଜାତିର ସ୍ୱାର୍ଥଲାଗି ତାଙ୍କ ଜୀବନର ବିଭିନ୍ନ କାର୍ଯ୍ୟ ଏବଂ ସେ ସମୟର ସମଗ୍ର ଓଡ଼ିଶାର ରାଜନୈତିକ ତଥା ସାଂସ୍କୃତିକ ଘଟଣାପ୍ରବାହର ଏକ ସାର୍ଥକ ଐତିହାସିକ ପ୍ରତିଲିପି । ଫକୀର-ମୋହନଙ୍କ ଜୀବନକାଳର ଓଡ଼ିଶାର ଇତିହାସ ଜାଣିବା ନିମିତ୍ତ ତାଙ୍କର ଆତ୍ମଜୀବନ-ଚରିତ ଅନେକାଂଶରେ ସାହାଯ୍ୟ କରେ ।

## (୧୧) ଫକୀରମୋହନଙ୍କ କବିତା

'ଉତ୍କଳ ଭ୍ରମଣଂ' ପହିଲି ଗସ୍ତ ୧୮୯୨ ସାଲ ମାର୍ଚ୍ଚ ମାସରେ ପ୍ରକାଶିତ ହୋଇଥିଲା । ସେନାପତିଙ୍କ ଜୀବନ-ଚରିତରେ ଲେଖାଅଛି ଯେ, କେନ୍ଦୁଝର ଗଣ୍ଡଗୋଳ ପରେ ଆନନ୍ଦପୁରରେ ଦୁଇ ଦିନ ଭିତରେ ସେ ଏହାକୁ ପ୍ରକାଶ କରିଅଛନ୍ତି । ଏହା ପରେ ସେ ବାଲେଶ୍ୱର ଆସିଛନ୍ତି । ତେଣୁ ଦୁସରା ଗସ୍ତ ବାଲେଶ୍ୱରରେ

ଲେଖିଥିବା ସମ୍ଭବପର । ଏହା ସମଗ୍ର ଓଡ଼ିଶାରେ ଏକ ବିଶୃଙ୍ଖଳା ସୃଷ୍ଟି କରିଦେଇଥିଲା । ଏଥିରେ ସେ ସମୟର ଓଡ଼ିଶାର ସମସ୍ତ ଗଣ୍ୟ-ମାନ୍ୟ ବ୍ୟକ୍ତି ସ୍ଥାନ ପାଇଥିଲେ । ଏହି ସମସ୍ତ ମାନ୍ୟଗଣ୍ୟ ବ୍ୟକ୍ତିମାନଙ୍କର ଦୋଷଗୁଣର ଆଲୋଚନା ଅତି ନିର୍ଭୀକ ଭାବରେ କରାଯାଇଥିଲା । ଇନ୍ଦ୍ରଧନୁ ଓ ବିଜୁଳୀ ବାଦବିସମ୍ବାଦ ସମୟରେ, ଯେତେବେଳେ କି ଦଳଗତ ଭାବରେ ଉପେନ୍ଦ୍ର ଓ ରାଧାନାଥ-କୈନ୍ଦ୍ରିକ କୁତ୍ସା ରଚନା କରାଯାଉଥିଲା, ସେହି ସମୟରେ ଉତ୍କଳ-ଭ୍ରମଣଂ ପ୍ରକାଶ ପାଇଛି । ନିଜକୁ ଅନ୍ତରାଳରେ ରଖି ଅନ୍ୟମାନଙ୍କୁ ନିନ୍ଦା କରିବା ନୀତି ଯେତେବେଳେ ଓଡ଼ିଶାରେ ଅତି ସାଧାରଣ କଥା ହୋଇଉଠିଥିଲା, ସେତେବେଳେ ଫକୀରମୋହନ ଅତି ନିର୍ଭୀକ ଭାବରେ ଗଣ୍ୟମାନ୍ୟ ବ୍ୟକ୍ତିଙ୍କର ସମାଲୋଚନା କରିଅଛନ୍ତି । ଏଥିରେ ପାନବାଲୀ ପାବଣିମାଠୁଁ ଆରମ୍ଭ କରି ପାରଳା ମହାରାଜାଙ୍କ ପର୍ଯ୍ୟନ୍ତ ବହୁ ବ୍ୟକ୍ତିଙ୍କର ନାମୋଲ୍ଲେଖ ଦେଖିବାକୁ ମିଳେ । ପୁଣି ସମାଲୋଚନା ଗୁଡ଼ିକ ଏପରି ଲେଖାଯାଇଛି ଯେ, ସେ ସମୟର ଘଟଣାପ୍ରବାହ ସହିତ ପରିଚିତ ନ ଥିବା ଲୋକ ସହଜରେ ତାକୁ ବୁଝିପାରିବ ନାହିଁ । ଭକ୍ତକବି ମଧୁସୂଦନଙ୍କ ବିଷୟରେ ସେ ଲେଖିଛନ୍ତି—

"ହେ ମଧୁସୂଦନ ରୁଷିଚରିଣ ମନୁଷ୍ୟ
କହିଥାଅ ଭାଇ ନେଇ ମୋହର ଆୟୁଷ
ଆଦର୍ଶ ମଣିଷ ଯେବେ ଦେଖିବାକୁ ଗୁଡ଼
ଧାଇଁଯାଇ ଥରେ ଦେଖିଆସ ମଧୁ ରାଓ ।"

ଗୌରୀଶଙ୍କରଙ୍କ ବିଷୟରେ,

"ହେ ଗୌରୀଶଙ୍କର ଧନ୍ୟ ତୁମରି ସାହସ
ଛାପିକା ଲେଖୁଛ ବସି ତିରିଶ ବରଷ ।"

କବି ନନ୍ଦକିଶୋରଙ୍କ ବିଷୟରେ ସେ ଲେଖିଛନ୍ତି—

"ଉତ୍କଳର ଯୋଗ୍ୟପୁତ୍ର ଶ୍ରୀ ନନ୍ଦକିଶୋର
ରୂପେଗୁଣେ ଯୋଗ୍ୟତାରେ ଶ୍ରୀ ନନ୍ଦକିଶୋର ।
ତୁମର କବିତାମାଳା ଦିଏ ଲୋକେ କହି
ଚନ୍ଦ୍ରାବଳୀ କଲମରୁ ପଡ଼ିଛି ବା ବହି,
ଉଚିତେ କିତାପ ଲେଖିଅଛ ସାନ ସାନ
ମୋ ବିଚାରେ ପରିଚୟ କବିତ୍ୱ ମହାନ ।"

ଏହିପରି ଭାବରେ ସେ ଅନେକ ବ୍ୟକ୍ତିଙ୍କ ସମାଲୋଚନା କରିଛନ୍ତି । 'ମୁଁ ହାଟବାହୁଡ଼ା' କବିତାରେ ତାଙ୍କର ଯେପରି ଦୃଷ୍ଟିକୋଣର ପ୍ରକାଶ ପାଇଛି 'ଉତ୍କଳ ଭ୍ରମଣଂ'ରେ ସେହି ମନୋବୃତ୍ତିର ପ୍ରକାଶ ମଧ୍ୟ ହୋଇଅଛି ।

"Educated ବାବୁମାନଙ୍କର ବ୍ୟବହାର
ଦେଖି ଦେଖି ହେଲିଣି ମୁଁ ନିହାତି ନାଚାର ।
Old fool prejudice ପକାଇଛ କାଟି
କଥାବେଳେ ମେଲଯାଏ ଦେଡ଼ଫୁଟ ପାଟି ।
Science, Logic ସବୁ ପକାଇଛ ଖୁଣ୍ଟି
ବାଟ ଗୃହ ଜାଣୁନାହିଁ ପଡ଼ୁଅଛ ଝୁଣ୍ଟି ।
କୋଅଁଟ୍ ସିଦ୍ଧାନ୍ତ ଘୋଷିବାରେ ଦେଇ ମନ
ଫିଙ୍ଗାଇ ଦେଇଲ ନାହିଁ ଗୌତମ ଦର୍ଶନ ।
ଇଂରେଜୀ ନାଟକ କାବ୍ୟ ଘେନିଅଛ ମାତି
ଫିଙ୍ଗିଦେଲ ଭଟ୍ଟି କାଳିଦାସ ଭବଭୂତି ।"

ତାଙ୍କର 'ପୁଷ୍ପମାଳା' କବିତା ପ୍ରକାଶ ପାଏ ୧୮୯୪ ସାଲରେ । ଏଥିରେ ୫୪ଟି କବିତା ସ୍ଥାନ ପାଇଅଛି । ବିଭିନ୍ନ ପ୍ରକାର ବିଷୟ

ଭାବନା ଏବଂ ବିଷୟକୁ ନେଇ ଏ କବିତାଗୁଡ଼ିକ ରଚିତ ।
'ଅବସର ବାସରେ' ର ପ୍ରଥମ ସଂସ୍କରଣ ୧୯୦୮ ସାଲରେ ପ୍ରକାଶ ପାଇଅଛି । ଏଥିରେ ୭ଗୋଟି ଅଧ୍ୟାୟରେ ୧୯୭ ଗୋଟି କବିତା ସନ୍ନିବେଶିତ । ଏଥିରେ ସନ୍ନିବେଶିତ କବିତାଗୁଡ଼ିକ ସେହିପରି ବିଭିନ୍ନ ବିଷୟକୁ ନେଇ ରଚିତ । 'ବୌଦ୍ଧାବତାର କାବ୍ୟ' ପ୍ରକାଶ ପାଏ ୧୯୦୯ ସାଲରେ । ଏହା ଊନବିଂଶ ସର୍ଗରେ ବିଭକ୍ତ । ଭାରତବର୍ଷରେ ଧର୍ମ-ଜଗତରେ ଅଧଃପତନର କାରଣରୁ ଗୌତମବୁଦ୍ଧଙ୍କ ଜନ୍ମଠାରୁ ଆରମ୍ଭ କରି ତାଙ୍କର ମହାପ୍ରୟାଣ ପର୍ଯ୍ୟନ୍ତ ଘଟଣାଗୁଡ଼ିକ ଏହି କାବ୍ୟରେ ବର୍ଣ୍ଣିତ । "ପୂଜାଫୁଲ"ର ପ୍ରଥମ ସଂସ୍କରଣ ୧୯୧୨ ସାଲରେ ପ୍ରକାଶିତ ହୋଇଥିଲା ଓ 'ଧୂଳି' ମଧ୍ୟ ଏହି ୧୯୧୨ ସାଲରେ ପ୍ରକାଶିତ ହୋଇଥିଲା । ଏହି ଦୁଇଟି କବିତାପୁସ୍ତକରେ ସେହିପରି ବିଭିନ୍ନ ବିକ୍ଷିପ୍ତ ବିଷୟକୁ ନେଇ କବିତାଗୁଡ଼ିଏ ଲେଖାଯାଇଛି । ଏହା ବ୍ୟତୀତ ବିଭିନ୍ନ ପତ୍ରପତ୍ରିକାରୁ ଆହୃତ ଅନେକ କ୍ଷୁଦ୍ର କବିତା ମିଳିଥାଏ । ଏସବୁ କବିତାଗୁଡ଼ିକରେ ଫକୀରମୋହନ ସେନାପତିଙ୍କର ବାସ୍ତବ ରୂପର ପରିଚୟ ବିଶେଷଭାବରେ ମିଳେ ନାହିଁ । ଉପନ୍ୟାସ ଓ କ୍ଷୁଦ୍ରଗଳ୍ପର ସ୍ରଷ୍ଟା ହିସାବରେ ସେ ଯେଉଁ ଗୌରବ ପାଇବାର କଥା, କବି ହିସାବରେ ପାଠକ ବା ସମାଲୋଚକ ସେ ଗୌରବ ତାଙ୍କୁ ଦିଏ ନାହିଁ । ଏହି କବିତାଗୁଡ଼ିକରେ ତାଙ୍କ ନିଜ ଜୀବନର ଅନେକ ସୂକ୍ଷ୍ମ ଅନୁଭୂତି ଯେପରି ଭାବରେ ରୂପାୟିତ ହୋଇଛି, ଆଦର୍ଶ ସ୍ଥାପନେ ନିତିକ ଜୀବନ ଦୃଷ୍ଟିରୁ ଅନେକ ବିଷୟରେ ମୌଳିକ ସତ୍ୟର ସେହିପରି ପ୍ରକାଶ ହୋଇଅଛି । ଯଦି ଫକୀର-ମୋହନ ଉପନ୍ୟାସ ଏବଂ ଗଳ୍ପ ରଚନାରେ ହାତ ନ ଦେଇ-ଥାନ୍ତେ, ତେବେ ଆଧୁନିକ ଯୁଗରେ ସେ କବି ହିସାବରେ ପରିଚିତ

ଚହାଇଥାନ୍ତେ । ମାତ୍ର ତାଙ୍କର ଉପନ୍ୟାସ ଓ କ୍ଷୁଦ୍ରଗଳ୍ପର ସୃଷ୍ଟିର ବିରାଟ ପ୍ରତିଭା ତଳେ କବି ଜୀବନର ସୃଷ୍ଟି, ତେଣୁ ଅସ୍ପଷ୍ଟ ଭାବରେ ରହିଯାଇଛି ।

ଏହି ଧୂଳିମାଟିର ଜଗତରେ କବିର ଅନୁଭୂତି ପାଠକ ମନରେ କବି ଜୀବନର ଅନେକ ସତ୍ୟ କଥାକୁ ପ୍ରକାଶ କରେ । ଫୁଲଟିଏ ଫୁଟିଲେ ତାର ସୌନ୍ଦର୍ଯ୍ୟରେ କବି ମୋହିତ ହୁଏ, ତାର ସୌରଭରେ କବି ଉନ୍ମାଦ ହୁଏ; ସେହି ଫୁଲର ସୌନ୍ଦର୍ଯ୍ୟ ଏବଂ ସୌରଭ କବି ମନସ୍ତତ୍ତ୍ୱରେ କି ପ୍ରକାରେ ପ୍ରତିଭାତ ହୁଏ, ତାହା ସେ ଜଗତକୁ ଜଣାଏ । ଠିକ୍ ଏହିପରି ଫକୀରମୋହନଙ୍କ ମନସ୍ତତ୍ତ୍ୱର ଅନୁଭୂତି ଓଡ଼ିଆ ସାହିତ୍ୟରେ ଯଥେଷ୍ଟ ରୂପରେ ପ୍ରକାଶିତ ହୋଇଥିଲେ ହେଁ ସମୟ ଓ ସମାଜର ବେଷ୍ଟନୀ ଭିତରେ ତାଙ୍କର ଚର୍ମଚକ୍ଷୁର ଅନୁଭୂତି ଯାହା ପ୍ରକାଶ କରିଅଛି, ତାହା ତୁଳନାରେ ପ୍ରଥମଟି ନିଷ୍ପ୍ରଭ । ଉପନ୍ୟାସର ନିଷ୍ଠୁର ବାସ୍ତବ କଙ୍କାଳ ଭିତରେ ବାସ୍ତବତାକୁ ଚିତ୍ରଣ କରିବା ନିମିତ୍ତ କଠିନ ହୃଦୟ ଯେଉଁ ସେନାପତିଙ୍କର ଥିଲା, ସେହି ସେନାପତିଙ୍କର ଥିଲା କବିତାର ସରସ କୋମଳ କଳେବର ଭିତରେ କଳ୍ପନା ଓ ବାସ୍ତବକୁ ରୂପାୟିତ କରିବାର ସମ୍ବେଦନଶୀଳ ହୃଦୟ । ଏହା କେବଳ ତାଙ୍କର ପକ୍ଷରେ ହିଁ ସମ୍ଭବ ।

## (୧୨) ଫକୀରମୋହନଙ୍କର ଅନୁବାଦ

ଫକୀରମୋହନ ସେନାପତିଙ୍କର ସର୍ବ ପ୍ରଥମ ଅନୁବାଦ ୧୮୬୬ ସାଲରେ ପ୍ରକାଶ ପାଇଛି । ଏହା ହେଉଛି ଈଶ୍ୱରଚନ୍ଦ୍ର ବିଦ୍ୟାସାଗରଙ୍କ ବଙ୍ଗଳା ପୁସ୍ତକ (ଜୀବନୀ)ର ଅନୁବାଦ । ୧୮୮୦ ସାଲରେ ରାମାୟଣ ଆଦିକାଣ୍ଡ, ୧୮୮୧ରେ ଅଯୋଧ୍ୟା କାଣ୍ଡ, ୧୮୮୪ରେ ଆରଣ୍ୟକାଣ୍ଡ, ୧୮୮୫ରେ କିଷ୍କିନ୍ଧ୍ୟା କାଣ୍ଡ, ୧୮୮୬ରେ

ସୁନ୍ଦରା କାଣ୍ଡ, ୧୮୯୦ରେ ଲଙ୍କା କାଣ୍ଡ ଓ ୧୮୯୫ରେ ଉତ୍ତରା କାଣ୍ଡ ପ୍ରକାଶିତ ହୋଇଛି । ଏହି ରାମାୟଣ ସଂସ୍କୃତ ରାମାୟଣର ଓଡ଼ିଆ ପଦ୍ୟାନୁବାଦ । ମହାଭାରତ, ୧୮୮୭ରେ ଆଦିପର୍ବ, ୧୮୮୭ରେ ସଭାପର୍ବ ପ୍ରକାଶ ପାଇ ବନପର୍ବ ଓ ବିରାଟପର୍ବ ତା ପରେ ପ୍ରକାଶ ପାଇଛି । ଶ୍ରୀମଦ୍ ଭଗବଦ୍‌ଗୀତା ୧୮୮୫ ସାଲ ବେଳକୁ ରଚିତ ହୋଇଥିଲା । ଖିଲ ହରିବଂଶ ୧୯୦୨ ସାଲରେ ପ୍ରକାଶ ପାଇଥିଲା । ବ୍ରାହ୍ମଣାନାଂ ସନ୍ଧ୍ୟାପଦ୍ଧତିଃ (୧୯୧୫), ଛାନ୍ଦୋଗ୍ୟ ଉପନିଷଦ୍ (୧୯୧୭), ଉପନିଷଦ୍ ସଂଗ୍ରହ ୧୯୦୪ରେ ପ୍ରକାଶ ପାଇଥିଲା । ଏହା ବ୍ୟତୀତ ଫକୀରମୋହନଙ୍କ ଅନ୍ୟାନ୍ୟ କ୍ଷୁଦ୍ର କବିତା ମଧ୍ୟରେ କେତେକ ଅନୁବାଦ ମଧ୍ୟ ଦେଖାଯାଏ । ତାଙ୍କର ଯାଜ୍ଞବଲ୍କ୍ୟ ମୈତ୍ରେୟୀ ସମ୍ବାଦ ୧୯୧୨ ସାଲରେ ପ୍ରକାଶିତ ହୋଇଥିଲା; ମାତ୍ର ଏହା ଅନୁବାଦ ନୁହେଁ । ବୃହଦାରଣ୍ୟକ ଉପନିଷଦ୍‌ରେ ଯାଜ୍ଞବଲ୍କ୍ୟ ମୈତ୍ରେୟୀ ସମ୍ବାଦ ଅବଲମ୍ବନରେ ଲିଖିତ । ତାଙ୍କର ଅନୁବାଦ ବିଷୟରେ ବିଭିନ୍ନ ସମୟରେ ପତ୍ର ପତ୍ରିକାରେ ଅନେକ ମତାମତ ପ୍ରକାଶ ପାଇଛି । ସଂସ୍କୃତ ଭାଷାର କଠିନ ବନ୍ଧନ ଭିତରେ ଥିବା ଧର୍ମଶାସ୍ତ୍ରକୁ ସାଧାରଣ ଲୋକମାନଙ୍କର ପାଠୋପଯୋଗୀ କରିବା ଇଚ୍ଛାରେ ଫକୀରମୋହନ ଯାହା ସବୁ ଅନୁବାଦ କରିଛନ୍ତି, ସେ ସବୁର ମୂଲ୍ୟ ନିର୍ଣ୍ଣିତ ରୂପରେ ଥିଲେହେଁ ଆଧୁନିକ ଓଡ଼ିଆ ସାହିତ୍ୟରେ ପୁରାତନର ପୁନରାଗମନକୁ ପାଠକଶ୍ରେଣୀ ଅଭିନନ୍ଦନ ଜଣାଇବାକୁ ସମର୍ଥ ହୋଇପାରି ନାହାନ୍ତି । କବିତା ବିଷୟରେ ଫକୀରମୋହନଙ୍କ ପ୍ରତି ଯେଉଁ ମତ ପ୍ରଯୁଜ୍ୟ, ପୁରାଣ ଶାସ୍ତ୍ର ଅନୁବାଦ କ୍ଷେତ୍ରରେ ସେହି ମତ ମଧ୍ୟ ପ୍ରଯୁଜ୍ୟ । ତାଙ୍କର ପୁରାଣ ଅନୁବାଦର ମହତ୍ତ୍ୱ ଉପନ୍ୟାସ ଓ କ୍ଷୁଦ୍ର ଗଳ୍ପ-ସ୍ରଷ୍ଟାର ମହତ୍ତ୍ୱ ତଳେ ଲୁକ୍କାୟିତ ।

## ( ୧୩ ) ଫକୀରମୋହନଙ୍କର ପ୍ରବନ୍ଧାବଳୀ

ବିଭିନ୍ନ ସମୟରେ ଓଡ଼ିଶାର ପତ୍ର ପତ୍ରିକାରେ ଫକୀରମୋହନ ଅନେକ ତତ୍କାଳୀନ ସମସ୍ୟାକୁ କେନ୍ଦ୍ର କରି ପ୍ରବନ୍ଧ ଲେଖିଥିଲେ । ସେଗୁଡ଼ିକ ପତ୍ରପତ୍ରିକାରେ ପ୍ରକାଶ ପାଇବା ବ୍ୟତୀତ ନିର୍ଦ୍ଦିଷ୍ଟ ପୁସ୍ତକ ଆକାରରେ ପ୍ରକାଶିତ ହୋଇନାହିଁ । ଫକୀରମୋହନଙ୍କ ଗ୍ରନ୍ଥାବଳୀର ଶେଷ ଆଡ଼କୁ ଏଗୁଡ଼ିକ ସନ୍ନିବେଶିତ ହୋଇଅଛି । ଉତ୍କଳ ଭାଷାର ଭୂତ ଭବିଷ୍ୟତ, ସିରାଜ ଉଦ୍ଦୌଲାଙ୍କ ଭୃଠଶାଳୀ ଓ ଗୁରୁଦକ୍ଷିଣା, ଓ୍ୱାଲଟିଅର ଦର୍ଶନ, ଶ୍ରୀକ୍ଷେତ୍ରରେ ଚୈତନ୍ୟ ମହାପ୍ରଭୁ, କବି ଗୋପାଳକୃଷ୍ଣ ପଟ୍ଟନାୟକ, ମାଇକେଲ ମଧୁସୂଦନ ଦତ୍ତ ଓ ମେଘନାଦ ବଧ କାବ୍ୟ, ବାଲେଶ୍ୱର ବନ୍ଦରରେ ଓଲନ୍ଦାଜ ଜାତି, ମେଘଦୂତର ବଙ୍ଗାନୁବାଦ, ଶୂଦ୍ର ଓ ବେଦାଧିକାର, ଦୁଇଟି ଅଭିଭାଷଣ ଓ ଗୋଟିକିଆ ପ୍ରତିବାଦ ( ଉତ୍କଳ ସାହିତ୍ୟର ପ୍ରାଣ ପ୍ରତିଷ୍ଠା ) ଏହି କେତୋଟି ପ୍ରବନ୍ଧ ଫକୀରମୋହନ ଲେଖିଥିଲେ । ଏହି ପ୍ରବନ୍ଧଗୁଡ଼ିକର ସାମୟିକ ଗୁରୁତ୍ୱ ଦୃଷ୍ଟିରୁ ତତ୍କାଳୀନ ସମୟ ଓ ପରିସ୍ଥିତିରେ ମୂଲ୍ୟ ଯଥେଷ୍ଟ ଭାବରେ ଅଛି । ପ୍ରବନ୍ଧର କଳେବର ଭିତରେ ସର୍ବତ୍ର ଫକୀରମୋହନଙ୍କର ସ୍ୱାଧୀନ ଚିନ୍ତାଧାରା ସହିତ ଦେଶାତ୍ମବୋଧର ଗଭୀର ପରିଚୟ ମିଳେ । ଅନେକ ସ୍ଥଳରେ ଫକୀରମୋହନ ପ୍ରାଚୀନ ପନ୍ଥୀ ହୋଇ ପଡ଼ିଥିଲେ ପରି ମନେହୁଏ ।

ଏ ପ୍ରାଚୀନ ପନ୍ଥା ପ୍ରକାରାନ୍ତରରେ ଫକୀରମୋହନଙ୍କର ନିଜ ଦେଶ ଓ ଜାତିର ଐତିହ୍ୟ ପ୍ରତି ଗଭୀର ଅନୁରାଗର ସୂଚନା ଦିଏ । ଓଡ଼ିଆ ଭାଷା ବିଷୟରେ ଆଲୋଚନା କରିବାକୁ ଯାଇ ସେହି କେତେ ବର୍ଷର ଭାଷାର ବିକାଶକୁ ୪ଟି ଯୁଗର ସୀମା ଭିତରେ

ଆବଦ୍ଧ କରିଅଛନ୍ତି—ମରହଟ୍ଟା ଯୁଗ, ମୁସଲମାନ ଯୁଗ, ଇଂରେଜ ଯୁଗ ଓ ପରବର୍ତ୍ତୀ ଯୁଗ। ଏହି ଭାଷା ଆଲୋଚନା ଭିତରେ ଭାଷାପ୍ରତି ଫକୀରମୋହନଙ୍କ ମମତା ଯେ ସପ୍ରସନ୍ନ ଥିଲା, ସେ କଥା ସେ କେହି ସ୍ୱୀକାର କରିବ। ସମସାମୟିକ ପରିସ୍ଥିତିର ଆଲୋଚନାରେ ଫକୀରମୋହନଙ୍କର ଦୃଷ୍ଟିକୋଣ ଯେତିକି ଗଭୀର, ସେତିକି ଅନୁଶୀଳନ-ପ୍ରୟାସୀ।

## (୧୪) ଓଡ଼ିଆ ସାହିତ୍ୟରେ ଫକୀର ମୋହନଙ୍କ ସ୍ଥାନ

ଆଧୁନିକ ଓଡ଼ିଆ ସାହିତ୍ୟରେ କବିବର ରାଧାନାଥ ଏକ ସୁଦୃଢ଼ ପଦକ୍ଷେପରେ ଓଡ଼ିଆ ସାହିତ୍ୟକୁ ଗତିଶୀଳ କରିବାର ପ୍ରୟାସ କରିଥିଲେ। ଗଙ୍ଗାଧର, ନନ୍ଦକିଶୋର, ପଦ୍ମଚରଣ ପ୍ରଭୃତିଙ୍କର ଦାନ ଏ ଯୁଗର ସାହିତ୍ୟକୁ ସମୃଦ୍ଧ କରିଅଛି। ଦୀର୍ଘ କାଳ ଧରି ଓଡ଼ିଆ ସାହିତ୍ୟର ଇତିହାସରେ କାବ୍ୟ-କବିତାର ପ୍ରସିଦ୍ଧି ଯେଉଁ ମାର୍ଗରେ ଅନୁସୃତ ହେଉଥିଲା, ସେ ମାର୍ଗରୁ ଓଡ଼ିଆ ସାହିତ୍ୟକୁ ଭିନ୍ନ ମାର୍ଗରେ ଅଗ୍ରସର କରାଇବାର ପ୍ରଚେଷ୍ଟା ଫକୀରମୋହନଙ୍କଠାରେ ହିଁ ଦେଖାଦେଲା। କାବ୍ୟକବିତା ଏବଂ ପୁରାଣାଦିର ଅନୁବାଦ ଆଧୁନିକ ଯୁଗର ଅନ୍ୟମାନଙ୍କ କୃତିପରି-ଫକୀରମୋହନଙ୍କ ଲେଖାରେ ଆତ୍ମପ୍ରକାଶ କରିଛି; ମାତ୍ର ଫକୀର ମୋହନଙ୍କ ବୈଶିଷ୍ଟ୍ୟ ଏଥିରେ ନିହିତ ନାହିଁ। ଓଡ଼ିଆ ଗଳ୍ପ ଏବଂ ଉପନ୍ୟାସର ଜନ୍ମଦାତା ରୂପେ ସେ ପୂଜ୍ୟ। ଅଧୁନାତନ କାଳରେ ଗଦ୍ୟ-ପ୍ରଧାନ ସାହିତ୍ୟ ଯୁଗରେ ଫକୀରମୋହନଙ୍କ ପ୍ରାଧାନ୍ୟ ସ୍ୱୀକାର୍ଯ୍ୟ।

ଉମେଶଚନ୍ଦ୍ର ସରକାର ଫକୀରମୋହନଙ୍କ ପୂର୍ବରୁ ପଦ୍ମମାଳୀ ଉପନ୍ୟାସ ଲେଖିଥିଲେ ହେଁ ବାସ୍ତବ ପକ୍ଷରେ ଦେଖିବାକୁ ଗଲେ ଓଡ଼ିଆ ଉପନ୍ୟାସକୁ ସେ ପ୍ରାଣପ୍ରାଚୁର୍ଯ୍ୟରେ ଭୂଷିତ କରିନାହାନ୍ତି।

ଫକୀରମୋହନ କେବଳ ଓଡ଼ିଆ ଉପନ୍ୟାସ ଓ ଗଳ୍ପ ସାହିତ୍ୟର ସ୍ରଷ୍ଟା ନୁହନ୍ତି, ପ୍ରତିଷ୍ଠାତା ମଧ୍ୟ । ଫକୀର ମୋହନଙ୍କ ପରେ ତାଙ୍କର ଅମର ଲେଖନୀ ଯାହା ସୃଷ୍ଟି କରିଥିଲା, ସେ ସବୁ ଆଜିପର୍ଯ୍ୟନ୍ତ ଅନତିକ୍ରମ୍ୟ ହୋଇ ରହିଅଛି । ଅନେକ ଲେଖକ ଲେଖିକା ଫକୀର ମୋହନଙ୍କୁ ଅନୁସରଣ ଏବଂ ଅନୁକରଣ କରି ମଧ୍ୟ ତାଙ୍କ ସୃଷ୍ଟି ସମ୍ପଦର ପ୍ରାଣପ୍ରାଚୁର୍ଯ୍ୟକୁ ଆଣି ନିଜ ସୃଷ୍ଟିସମ୍ପଦ ଭିତରେ ସ୍ଥାପନ କରିବା ନିମିତ୍ତ ସମର୍ଥ ହୋଇପାରି ନାହାନ୍ତି । ଉପନ୍ୟାସ ଓ ଗଳ୍ପରେ ତାଙ୍କର ସଂସ୍କାରକଳ୍ପନା, ଚରିତ୍ର ଚିତ୍ରଣ, ଚରିତ୍ର-ସମାବେଶ, ବର୍ଣ୍ଣନାଶୈଳୀ, ହାସ୍ୟରସ, ଭାଷାର ସୌଷ୍ଠବତା ପ୍ରଭୃତିରେ ସେ ଓଡ଼ିଆ ସାହିତ୍ୟରେ ଏକ ଅପୂର୍ବ ଦିଗ୍‌ଦର୍ଶନର ସନ୍ଧାନ ଦେଇଯାଇ ଅଛନ୍ତି ।

ଆଧୁନିକ ଯୁଗର କେତେକ ସମାଲୋଚକ ଓଡ଼ିଆ ସାହିତ୍ୟରେ ଆଧୁନିକ ଯୁଗକୁ ରାଧାନାଥଙ୍କ ନାମରେ ନାମିତ ନ କରି ଫକୀର-ମୋହନଙ୍କ ନାମରେ ନାମିତ କରିବାକୁ ଉଚିତ ମନେ କରନ୍ତି । ଏହାର କାରଣ ହେଉଛି, ଓଡ଼ିଆ ସାହିତ୍ୟକୁ ଗୋଟିଏ ନୂତନ ମାର୍ଗରେ ଅଗ୍ରସର ହେବା ନିମିତ୍ତ ସେ ଦେଇଛନ୍ତି ଏକ ବଳିଷ୍ଠ ଦିଗ୍-ଦର୍ଶନ । ଫକୀରମୋହନଙ୍କ ପ୍ରଭାବ ଅଧୁନାତନ ସାହିତ୍ୟରେ ଯଦି ସ୍ୱୀକାର କରାଯାଏ, ତେବେ ତାଙ୍କୁ ଯୁଗପ୍ରବର୍ତ୍ତକ କହିବାରେ ଆପତ୍ତି କିଛି ନ ଥାଇ ପାରେ । ମାତ୍ର ଗଦ୍ୟର ପ୍ରାଧାନ୍ୟ ଏ ଯୁଗରେ ଯେତେ ବେଶୀ ହେଲେ ହେଁ, ପଦ୍ୟର ପ୍ରାଧାନ୍ୟ କିଛି କମ୍ ନୁହେଁ । ଫକୀର-ମୋହନ ଯୁଗସ୍ରଷ୍ଟା ହୁଅନ୍ତୁ ବା ନ ହୁଅନ୍ତୁ, ସେଥିରେ ଆମର କିଛି କହିବାର ନାହିଁ; ମାତ୍ର ଅଧୁନାତନ ଓଡ଼ିଆ ସାହିତ୍ୟର ସେ ଯେ ପ୍ରାଣ ପ୍ରତିଷ୍ଠାତା ଏଥିରେ ସନ୍ଦେହ କରିବାର କିଛି ନାହିଁ ।

---

# କବି ଗଙ୍ଗାଧର ମେହେର

ଏ ଦେଶରେ ଇଂରେଜ ଶାସନ ଫଳରେ ଇଂରେଜୀ ଶିକ୍ଷା ପ୍ରଣାଳୀର ପ୍ରବର୍ତ୍ତନ ଦ୍ୱାରା ନୂତନ ନୂତନ ଚିନ୍ତାଧାରାର ଯେଉଁ ଉନ୍ମେଷ ଘଟିଥିଲା, ତାହା ଫଳରେ ଏକ ନୂତନ ଶିକ୍ଷିତ ଗୋଷ୍ଠୀର ଅଭ୍ୟୁଦୟ ହୋଇଥିଲା । ଏହି ନୂତନ ଶିକ୍ଷିତ ଗୋଷ୍ଠୀର ସଂଖ୍ୟା ଏତେ ସ୍ୱଳ୍ପ ଥିଲା ଯେ, ସାହିତ୍ୟ କ୍ଷେତ୍ରରେ ଏକ ବୈପ୍ଳବିକ ପରିବର୍ତ୍ତନ ନିମିତ୍ତ କେବଳ ସେହିମାନେ ସମର୍ଥନ କଲେ ହେଁ ଅଧିକ ସଂଖ୍ୟାରେ ଥିବା ପୁରାତନପନ୍ଥୀ ପାଠକମାନେ ଏହାକୁ ସମର୍ଥନ କରି ନ ଥିଲେ । କବିବର ରାଧାନାଥ ଓଡ଼ିଆ କାବ୍ୟ ସାହିତ୍ୟର ପରଂପରାରେ ଯେଉଁ ନୂତନତ୍ୱ ଭରି ଦେଲେ ସେ ନୂତନତ୍ୱକୁ ସେହି କାରଣରୁ ଓଡ଼ିଆ ପାଠକଶ୍ରେଣୀ ସ୍ଥିର ଚିତ୍ତରେ ଗ୍ରହଣ କରି ନେଇ ପାରିନାହିଁ । ତେଣୁ ୧୮୯୩ ମସିହା ଅଗଷ୍ଟମାସ ୧୭ ତାରିଖରେ 'ଇନ୍ଦ୍ରଧନୁ' ଓ ସେପ୍‌ଟେମ୍ବର ମାସ ୧୭ ତାରିଖରେ 'ବିଜୁଳୀ' ପ୍ରକାଶ ପାଇବାଦ୍ୱାରା ରାଧାନାଥ-ଉପେନ୍ଦ୍ର-କେନ୍ଦ୍ରିକ ବାଦବିସମ୍ବାଦ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ଏକ ଉତ୍ତେଜନାମୂଳକ ପରିସ୍ଥିତି ସୃଷ୍ଟି କରିଥିଲା । ଯେତେବେଳେ ରାଧାନାଥଙ୍କ ସମର୍ଥକମାନେ ରାଧାନାଥଙ୍କୁ ପ୍ରଶଂସା କରୁଛନ୍ତି ଏବଂ ଉପେନ୍ଦ୍ରଭଞ୍ଜଙ୍କୁ ନିନ୍ଦା କରୁଛନ୍ତି, ଠିକ୍ ସେତିକିବେଳେ ପୁରାତନପନ୍ଥୀମାନେ ରାଧାନାଥଙ୍କୁ ନିନ୍ଦା କରି ଉପେନ୍ଦ୍ରଭଞ୍ଜଙ୍କୁ ପ୍ରଶଂସା କରିବାରେ ତତ୍ପର । ଏହି ବାଦବିସମ୍ବାଦ ପୁରାତନ ଏବଂ ନୂତନ ମତବାଦର ସଂଘର୍ଷ ରୂପେ ପରିଚିତ । ଆମର ଏଠାରେ ଲକ୍ଷ୍ୟ କରିବାର କଥା ଯେ, ରାଧାନାଥ କାବ୍ୟର ଆଙ୍ଗିକ ଏବଂ ଆତ୍ମିକ ପରିବର୍ତ୍ତନ ଆଣିବାକୁ ଯେଉଁ ପରଂପରା ସୃଷ୍ଟି କଲେ, ସେ ପରମ୍ପରାକୁ ଓଡ଼ିଶାର ଜନସାଧାରଣ ଏତେ ଶୀଘ୍ର ଗ୍ରହଣ କରିବାକୁ ପ୍ରସ୍ତୁତ ନ ଥିଲେ । ଓଡ଼ିଆ ସାହିତ୍ୟରେ ଏହିଭଳି ଏକ ଅସ୍ୱାଭାବିକ ପରିସ୍ଥିତି

ବେଳେ କବି ଗଙ୍ଗାଧର ମେହେରଙ୍କର ଆବିର୍ଭାବ । ଗଙ୍ଗାଧର ମେହେରଙ୍କର ସାହିତ୍ୟର ଅନୁଶୀଳନ କେବଳ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ଏହି ବିବର୍ତ୍ତମାନ ପରିସ୍ଥିତିକୁ ଆଖି ଆଗରେ ରଖିବାକୁ ପଡ଼ିବ । ଏହି ବିବର୍ତ୍ତମାନ ପରିସ୍ଥିତିର ପ୍ରତ୍ୟକ୍ଷ ପ୍ରଭାବ ଗଙ୍ଗାଧରଙ୍କ ସାହିତ୍ୟ ସୃଷ୍ଟିରେ ସ୍ପଷ୍ଟ ପରିଲକ୍ଷିତ ହୁଏ । ଏ ଦେଶରେ ବହୁ କାଳରୁ ପ୍ରଚଳିତ ପୁରାତନ ପନ୍ଥାରେ ସେ ନିଜକୁ ଯେପରି ପରିଚାଳିତ କରି ନାହାନ୍ତି, ସେହିପରି ଏ ଦେଶରେ ନୂତନ ଶିକ୍ଷାର ଆଲୋକ ଫଳରେ ଦେଖା ଦେଇଥିବା ବୈପ୍ଳବିକ ଚିନ୍ତାଧାରାରେ ନିଜକୁ ଭସାଇଦେଇ ନାହାନ୍ତି । ଏ ଦୁଇଟିରୁ ଯେଉଁ ଗୋଟିକୁ ଶ୍ରେୟସ୍କର ବୋଲି ସେ ମଣିଛନ୍ତି ସେଇଟିକୁ ସେ ଗ୍ରହଣ କରିଛନ୍ତି । ତେଣୁ ଗଙ୍ଗାଧର-ସାହିତ୍ୟ-ସମୀକ୍ଷକ ଦେଖିବାକୁ ପାଏ ପ୍ରାଚୀନତା ଏବଂ ଆଧୁନିକତାର ଏକ ମନୋଜ୍ଞ ସମନ୍ୱୟ । ଆଧୁନିକ ଯୁଗରେ ନିଜର ଲେଖନୀ ଚାଳନ କରିଥିବା ହେତୁ ଯୁଗର ପ୍ରଭାବକୁ ଅସ୍ୱୀକାର କରିବା ତାଙ୍କ ପକ୍ଷରେ ଅସମୀଚୀନ ହେବାରୁ ପୁରାତନ କାବ୍ୟ ସମୂହରୁ କଥାବସ୍ତୁ ସଂଗ୍ରହ କରି ଆଧୁନିକ ପରିବେଶରେ ମନୋଜ୍ଞ ଭାବରେ ସେ ସେସବୁକୁ ପ୍ରକାଶ କରିଅଛନ୍ତି ।

## ମେହେର ସାହିତ୍ୟ ସୃଷ୍ଟିର ପର୍ଯ୍ୟାୟକ୍ରମ

ଗଙ୍ଗାଧର ମେହେର କବି ଜୀବନର ପ୍ରଥମ ପର୍ଯ୍ୟାୟରେ କେତେକ କ୍ଷୁଦ୍ର କବିତା ଲେଖିଥିଲେ । ତନ୍ମଧ୍ୟରେ 'ରସ-ରତ୍ନାକର' କେବଳ ଆକାରରେ ବଡ଼ । 'ରସ-ରତ୍ନାକର' ବ୍ୟତୀତ ଅନ୍ୟସବୁ କବିତା ଲୁପ୍ତ । 'ରସ-ରତ୍ନାକର'ର ଭାଷା, ପ୍ରକାଶଭଙ୍ଗୀ ଓ ଶିଳ୍ପ-ନୈପୁଣ୍ୟ ପରୀକ୍ଷା କଲେ ଜଣାଯାଏ, ଏହା ୧୮୯୦ ସାଲ ପରେ ରଚିତ ହେବା ସମ୍ଭବପର । ସ୍କୁଲ ଛାଡ଼ିବା ପରଠାରୁ ଲାବଣ୍ୟବତୀ, ସୁଭଦ୍ରା ପରିଣୟ, ରସିକ ହାରାବଳୀ ପ୍ରଭୃତି ମଧ୍ୟ-ଯୁଗୀୟ ଓଡ଼ିଆ

କାବ୍ୟରାଜି ପାଠ କରି ସେହି ଆଦର୍ଶରେ ଅନୁପ୍ରାଣିତ ହୋଇ ଯେଉଁ କବିତାଗୁଡ଼ିକ ସେ ସୃଷ୍ଟି କରିଥିଲେ, 'ରସ-ରତ୍ନାକର' ତନ୍ମଧ୍ୟରୁ ଅନ୍ୟତମ । ତେଣୁ ଗଙ୍ଗାଧରଙ୍କ ଜୀବନର ପ୍ରାଥମିକ କବିତା ରଚନା ନିମିତ୍ତ ପ୍ରାଚୀନ ଓ ମଧ୍ୟଯୁଗୀୟ କାବ୍ୟ ସାହିତ୍ୟ ମୁଖ୍ୟତଃ ଦାୟୀ । ଅଧ୍ୟାପକ ନଟବର ସାମନ୍ତରାୟଙ୍କ ବିଶ୍ଳେଷଣ ଅନୁସାରେ ଗଙ୍ଗାଧରଙ୍କ ଜୀବନର ଏହି ପ୍ରାଚୀନ ଏବଂ ମଧ୍ୟଯୁଗୀୟ ଆଦର୍ଶବାଦ ବରପାଲି ଯୁବରାଜଙ୍କ ଗୃହଶିକ୍ଷକ ସୂର୍ଯ୍ୟ କୁମାର ମିଶ୍ରଙ୍କ ସଂପର୍କରେ ଆସି ପରିବର୍ତ୍ତିତ ହେବାର ସୁଯୋଗ ପାଇଲା । ଆଧୁନିକ ଶିକ୍ଷାରେ ଶିକ୍ଷିତ ସୂର୍ଯ୍ୟ କୁମାର ମିଶ୍ର ଗଙ୍ଗାଧରଙ୍କୁ ଆଧୁନିକ ପରିବେଶ ଆଡ଼କୁ ଟାଣି ନେଇଥିଲେ । ତେଣୁ ଗଙ୍ଗାଧର ସାହିତ୍ୟ ସୃଷ୍ଟିରେ ଆଧୁନିକତାର କେତେକ ଗୁଣ ଏହିଠାରୁ ପରିଲକ୍ଷିତ ହେଲା । 'ଅହଲ୍ୟାସ୍ତବ' ଏହି ନୂତନ ଗୁଣର ଏକ ବିଶିଷ୍ଟ ପରିଚୟ । ଏହି କବିତାରେ ପ୍ରାଚୀନ ଓ ନୂତନର ସମୀକରଣ ଦେଖା ଦେଇଛି । ସଂସ୍କୃତ ଶାର୍ଦ୍ଦୂଳ ବିକ୍ରୀଡ଼ିତ ଛନ୍ଦରେ 'ଅହଲ୍ୟାସ୍ତବ'କୁ ସେ ଲେଖି-ଥିଲେ ହେଁ କବିବର ରାଧାନାଥଙ୍କ ପରାମର୍ଶରେ ସଂସ୍କୃତ ଛନ୍ଦକୁ ପରିତ୍ୟାଗ କରି ବଙ୍ଗଳାଶ୍ରୀ ରାଗରେ ଏହାକୁ ପ୍ରକାଶ କଲେ । ୧୮୯୨ ସାଲଠାରୁ ୧୯୦୩ ସାଲ ପର୍ଯ୍ୟନ୍ତ ଗଙ୍ଗାଧରଙ୍କ ଉପରେ ରାଧାନାଥଙ୍କ ପ୍ରଭାବ ଲକ୍ଷ୍ୟ କରିବାର କଥା । ଏହି ସମୟରେ ଲିଖିତ ହୋଇଥିବା 'ଇନ୍ଦୁମତୀ' (୧୮୯୩), 'ଉତ୍କଳଲକ୍ଷ୍ମୀ' (୧୮୯୪), 'କୀଚକ ବଧ' (୧୯୦୨-୧୯୦୩) ପୁସ୍ତକ ଗୁଡ଼ିକର ପାଣ୍ଡୁଲିପି ରାଧାନାଥ ସଂଶୋଧନ କରିଥିଲେ ଓ ଏଗୁଡ଼ିକର ପ୍ରକାଶ ପାଇଁ ଗଙ୍ଗାଧରଙ୍କୁ ଉତ୍ସାହିତ କରିଥିଲେ । ୧୯୦୩ ସାଲ ପରଠାରୁ ୧୯୧୦ ସାଲ ପର୍ଯ୍ୟନ୍ତ ଗଙ୍ଗାଧର ଆଉ କିଛି ଲେଖାଲେଖି କରି ପାରି ନ ଥିଲେ । ୧୯୧୦ ସାଲରୁ ଗଙ୍ଗାଧରଙ୍କ ସୃଷ୍ଟି ପର୍ଯ୍ୟାୟର

ଉତ୍ପତ୍ତିର କ୍ରମ ଆରମ୍ଭ ହୁଏ । ଏହି ସମୟର ସାହିତ୍ୟ ସୃଷ୍ଟି ଉପରେ ବ୍ରଜମୋହନ ପଣ୍ଡାଙ୍କର ପ୍ରଭାବ ସବିଶେଷ ବେଶୀ ଥିଲା । ଏହି ସମୟରେ ମୁଖ୍ୟତଃ ଦୁଇ ପ୍ରକାରର ରଚନା ଗଙ୍ଗାଧରଙ୍କ ଲେଖନୀରେ ଆତ୍ମପ୍ରକାଶ କରି ଗଙ୍ଗାଧରଙ୍କ ଗୌରବକୁ ସୁପ୍ରତିଷ୍ଠିତ କରିଥିଲା । କାବ୍ୟ ବା ଦୀର୍ଘ କବିତା ରୂପେ ଅଯୋଧ୍ୟା ଦୃଶ୍ୟ (୧୯୧୦), ପଦ୍ମିନୀ (୧୯୧୧), ତପସ୍ୱିନୀ (୧୯୧୨), ପ୍ରଣୟ ବଲ୍ଲରୀ (୧୯୧୫) ଓ ଗୀତି କବିତା ରୂପେ କବିତା କଲ୍ଲୋଳ (୧୯୧୨), ଅର୍ଘ୍ୟଥାଳୀ (୧୯୧୮) ଏବଂ କବିତାମାଳା ଇତ୍ୟାଦି ଏହି ସମୟର ଅପୂର୍ବ ସୃଷ୍ଟି ।

## (୨) ଗଙ୍ଗାଧର ମେହେରଙ୍କର କାବ୍ୟକବିତା:—

ରାଧାନାଥ ସାହିତ୍ୟକୁ ଯେତେବେଳେ ବିଜାତୀୟ-ପ୍ରେମ-ମୂଳକ ସାହିତ୍ୟ ବୋଲି ନାମିତ କରି ଏ ଦେଶରେ ଆକ୍ଷେପ କରାଯାଉଥିଲା, ଯେତେବେଳେ ଗଙ୍ଗାଧର ମେହେର ରସ-ରତ୍ନାକର ରଚନା କରିଥିଲେ । ସ୍ୱଦେଶର ସ୍ୱଜାତୀୟ ପ୍ରେମକୁ ସାହିତ୍ୟରେ ରୂପଦାନ କରିବା ଏଠାରେ ଗଙ୍ଗାଧରଙ୍କ ଲକ୍ଷ୍ୟ ଥିଲା । ବାଣାସୁର କନ୍ୟା ଉଷା ସହିତ ଅନିରୁଦ୍ଧଙ୍କର ପରିଣୟ ଉପରେ ଏ କାବ୍ୟ ରଚିତ । ଉଷା-ଅନିରୁଦ୍ଧ-ପରିଣୟ-ସମ୍ବାଦ ଭାରତୀୟ ପୌରାଣିକ ଆଖ୍ୟାନରୁ ଗୃହୀତ । ଏହା ପୂର୍ବରୁ ରାଧାନାଥଙ୍କର ଉଷା କାବ୍ୟ ପ୍ରକାଶ ପାଇ ସାରିଛି । ରାଧାନାଥଙ୍କ ଉଷା କାବ୍ୟରେ ଗ୍ରୀକ୍ ଆଲଟାଲାଣ୍ଟାର ରୂପ ସୌନ୍ଦର୍ଯ୍ୟର ପ୍ରକାଶ ହୋଇଛି । ଗ୍ରୀକ୍ ଦେଶରୁ ଆଟେଲାଣ୍ଟାକୁ ଆଣି ଏ ଦେଶର ଶୋଣିତପୁର ଉଷା ମଧ୍ୟରେ ଯେପରି ଭାବରେ ରାଧାନାଥ ଅବସ୍ଥାପିତ କରିଥିଲେ, ମନେହୁଏ ତାର ପରୋକ୍ଷ ପ୍ରତିବାଦ ସ୍ୱରୂପ ଗଙ୍ଗାଧର ମେହେର ଏହି ଦେଶର ଉଷାକୁ ଆଣି ପାଠକ ସମାଜ ଆଗରେ ଠିଆ କରାଇ ଦେଇଛନ୍ତି । 'ରସରତ୍ନାକର'

ମଧ୍ୟଯୁଗୀୟ ସାହିତ୍ୟର ଆଦର୍ଶରେ ରଚିତ ହୋଇଥିବାରୁ ସେଥିରେ କ୍ଲିଷ୍ଟ ଓ ଦୁର୍ବୋଧ ଶବ୍ଦର ପ୍ରୟୋଗ, ଗତାନୁଗତିକ ବର୍ଣ୍ଣନା, ଅଳଙ୍କାର ସମାବେଶର ବହୁଳତା ପ୍ରଭୃତି ଦେଖାଯାଏ। ତେଣୁ 'ରସ-ରତ୍ନାକର' ଗଙ୍ଗାଧର-ସାହିତ୍ୟ-ପ୍ରତିଭାର ପରିଚୟ ଦେବାକୁ ଯେ ଆଦୌ ସମର୍ଥ ନୁହେଁ, ଏ କଥା ଭୁଲିଗଲେ ଚଳିବ ନାହିଁ। ମେହେରଙ୍କ ଲେଖନୀରୁ ପ୍ରକାଶ ପାଇଛି 'ଅହଲ୍ୟାସ୍ତବ'। ଅଭିଶପ୍ତା ଅହଲ୍ୟା ପ୍ରସ୍ତରରେ ପରିଣତ ହୋଇ ଶ୍ରୀରାମଙ୍କ ପଦଧୂଳି ଲାଗି ମୁକ୍ତି ପାଇବା ପରେ ଶ୍ରୀରାମଙ୍କୁ ବନ୍ଦନା କରିଛନ୍ତି। 'ଅହଲ୍ୟାସ୍ତବ' 'ରସ-ରତ୍ନାକର' ଅପେକ୍ଷା ଆଧୁନିକତାରେ ଅଧିକ ଭୂଷିତ ହେଲେ ହେଁ ମେହେରଙ୍କର ପରବର୍ତ୍ତୀ ପ୍ରତିଭା ବିକାଶ ନିମିତ୍ତ ଯେ ଯଥେଷ୍ଟ ସୂଚନା ଦେଇଛି, ଏଥିରେ ସନ୍ଦେହ ନାହିଁ।

'ଇନ୍ଦୁମତୀ' କାବ୍ୟର କଥାବସ୍ତୁ 'ରଘୁବଂଶ' ପଞ୍ଚମସର୍ଗରୁ ଅଷ୍ଟମ ସର୍ଗର ଶେଷ ପର୍ଯ୍ୟନ୍ତ ଥିବା କଥାବସ୍ତୁରୁ ଆନୀତ। ଇନ୍ଦୁମତୀଙ୍କର ସ୍ୱୟମ୍ବର ସଭାର ବର୍ଣ୍ଣନା, ଇନ୍ଦୁମତୀଙ୍କର ବିବାହ, ବିବାହ ପରେ ମୃତ୍ୟୁ ପ୍ରଭୃତି ଘଟଣାଗୁଡ଼ିକରେ ଗଙ୍ଗାଧର ପୌରାଣିକ କଥାବସ୍ତୁ ସହିତ ନୂତନ ରୁଚି ପ୍ରବର୍ତ୍ତନ କରିଛନ୍ତି। ମୂଳ ବିଷୟ-ବସ୍ତୁର ବହୁ ଅଂଶ ସେ ବର୍ଜନ କରିଅଛନ୍ତି। ଫଳରେ ସ୍ୱୟମ୍ବର ଓ ଅଜବିଳାପ ବିଷୟ ଉପରେ ବିଶେଷ ପ୍ରାଧାନ୍ୟ ଦେଖାଦେଇଛି। ପ୍ରତ୍ୟେକ ବିଷୟର ସଂଯତ ବର୍ଣ୍ଣନା ଏହି କାବ୍ୟର ବିଶେଷତ୍ୱ। ଇନ୍ଦୁମତୀର ମୂଳସ୍ୱର ହେଉଛି କରୁଣ। ସ୍ୱୟମ୍ବର ସଭାର ସୌନ୍ଦର୍ଯ୍ୟ-ପୂର୍ଣ୍ଣ ପରିସ୍ଥିତିରୁ ଏହି କରୁଣ ରସ ସତେ ଯେପରି ପାଠକର ମନରେ ସ୍ୱତଃ ଉଦୟ ହୋଇଥାଏ। ଅଜ ଏବଂ ଇନ୍ଦୁମତୀଙ୍କର ପରସ୍ପର ପ୍ରତି ଆକର୍ଷଣ ପୂର୍ବରୁ ଥିଲା। ଅଜ ଯେତେବେଳେ

ସ୍ୱୟମ୍ବର ସଭାରେ ପହଞ୍ଚିଛନ୍ତି, ସେତେବେଳେ କବି ବର୍ଣ୍ଣନା କରିଛନ୍ତି—

"ପୂର୍ଣ୍ଣ କଳାକର ସମୁଦିତ ହେଲେ
ତାରାକୁଳ ଯଥା ମ୍ଳାନ
ଅଜ ଆଗମନେ ନୃପମାନଙ୍କର
ହ୍ରସ୍ୱ ହେଲା ଅଭିମାନ ।
କନ୍ୟା ଲଭି ଆଶା ଦୂର ହୋଇଗଲା
ମାନସରୁ ତାହାଙ୍କର
ଶରଦ ଆଗମ ଦରଶନେ ଯଥା
ଆକାଶରୁ ଜଳଧର ।"

ଇନ୍ଦୁମତୀ ସ୍ୱୟମ୍ବର ସଭାରେ ପ୍ରବେଶ କରିବା ସମୟର ଶୋଭା ବର୍ଣ୍ଣନା ସେହିପରି କବି କରିଛନ୍ତି ।

"ରାଜନ୍ୟମଣ୍ଡଳ ମଧ୍ୟେ ବିରାଜିଲା
ଏକାଳେ ରାଜନନ୍ଦିନୀ
ଇନ୍ଦ୍ର ଶରାସନ ତଳେ ବିଲସିଲା
କିବା ଘୃରୁ ସୌଦାମିନୀ,
ଅଥବା ରତନ— ଖଣି ଗର୍ଭେ ହେଲା
ଦୀପଶିଖା ପ୍ରଜ୍ୱଳିତା
ନବ ବିକଶିତ କମଳ କାନନେ
କମଳା ବା ବିରାଜିତା ।"

ଇନ୍ଦୁମତୀ କାବ୍ୟରେ ପ୍ରକୃତି ଚିତ୍ରଣରେ କବି ସିଦ୍ଧହସ୍ତତା ପ୍ରଦର୍ଶନ କରିଅଛନ୍ତି । ଉଦ୍ୟାନ ବର୍ଣ୍ଣନା ଓ ବସନ୍ତ ବର୍ଣ୍ଣନା ଭିତରେ ଥିବା ଗଙ୍ଗାଧରଙ୍କର ଅସାଧାରଣ କବିପ୍ରତିଭା ଲକ୍ଷ୍ୟ କରି କବିବର

ରାଧାନାଥ ମତ ଦେଇଥିଲେ, "ଗ୍ରନ୍ଥକାର ଉଚ୍ଚ ଶିକ୍ଷାର ସୁବିଧା ମାଇ ନ ଥିଲେ; ମାତ୍ର ତାହାଙ୍କର ନୈସର୍ଗିକ ପ୍ରତିଭା ସେହି ଅଭାବ ପୂରଣ କରି ଦେଇଅଛି । ସେହି ପ୍ରତିଭା ବଳରେ ସେ ପ୍ରକୃତିର ସୌନ୍ଦର୍ଯ୍ୟ ପରୋକ୍ଷ ଭାବରେ ପୁସ୍ତକରେ ନ ଦେଖି ନେତ୍ରରେ ପ୍ରତ୍ୟକ୍ଷ ପ୍ରତ୍ୟକ୍ଷ କରିଅଛନ୍ତି ଏବଂ ଯାହା ଦେଖି ଅଛନ୍ତି, ତାହା ଯଥାଯଥ ବର୍ଣ୍ଣନା କରିଅଛନ୍ତି । ଏଥିରେ ଥିବା ଉଦ୍ୟାନ ବର୍ଣ୍ଣନା ମୋର ଏ କଥାର ପ୍ରମାଣ ରୂପେ ଗୃହୀତ ହୋଇପାରେ ।"

ଇନ୍ଦୁମତୀ ଗଙ୍ଗାଧର ମେହେରଙ୍କର ପ୍ରଥମ ପ୍ରକାଶିତ କାବ୍ୟ ହେଲେହେଁ ଗଙ୍ଗାଧର ମେହେରଙ୍କର ସୃଷ୍ଟିଶକ୍ତିର ଯେଉଁ ପରିଚୟ ଦେଇଅଛି, ତାହା ଅସାଧାରଣ । ଇନ୍ଦୁମତୀର ପାଣ୍ଡୁଲିପି ପାଠକରି କବିବର ରାଧାନାଥ ମତ ଦେଇଛନ୍ତି, "ଇନ୍ଦୁମତୀ କାବ୍ୟ ମୁଁ ଆଦ୍ୟୋପାନ୍ତ ପାଠ କରି ଆଶାତୀତ ପ୍ରୀତି ଲାଭ କରିଅଛି । ଏ କାବ୍ୟର କବି ସାମାନ୍ୟ ଶକ୍ତିଶାଳୀ ଲେଖକ ନୁହନ୍ତି । ମୂଳ ଚରିତ ରଘୁବଂଶରୁ ସଂଗୃହୀତ ହୋଇଥିଲେହେଁ ଏହାର ଭାବ ଏବଂ ଭାଷା ଦୃଷ୍ଟିରୁ ମୁଁ ଏହାକୁ ଅଭିନବ ଏବଂ ଉତ୍କୃଷ୍ଟ କାବ୍ୟ ରୂପେ ଗ୍ରହଣ କରିବାକୁ ଲେଶ ମାତ୍ର କୁଣ୍ଠିତ ହେବି ନାହିଁ ।" ଇନ୍ଦୁମତୀ ପାଠକରି ପଲ୍ଲୀକବି ନନ୍ଦକିଶୋର ମଧ୍ୟ ଗଙ୍ଗାଧରଙ୍କର ଉଚ୍ଛ୍ୱସିତ ପ୍ରଶଂସା କରିଅଛନ୍ତି ।

ଇନ୍ଦୁମତୀ ପରେ ଗଙ୍ଗାଧରଙ୍କ ଲେଖନୀରୁ 'ଉତ୍କଳଲକ୍ଷ୍ମୀ' କାବ୍ୟ ଆତ୍ମପ୍ରକାଶ କରିଅଛି । ଉତ୍କଳର ପ୍ରାକୃତିକ ବିଭବକୁ କଥାବସ୍ତୁ ରୂପେ ଗ୍ରହଣ କରି କବି ଉତ୍କଳଲକ୍ଷ୍ମୀ କାବ୍ୟ ରଚନା କରିଅଛନ୍ତି । ଏହା ପୂର୍ବରୁ କବିବର ରାଧାନାଥ ଉତ୍କଳର ପ୍ରକୃତିକୁ ଏକ ନୂତନ ରୂପରେ ପ୍ରକାଶ କରିଥିଲେ । ଉତ୍କଳ ଲକ୍ଷ୍ମୀର କଥାବସ୍ତୁ ତାର

ପ୍ରତିଧ୍ୱନି କହିଲେ ଅସମୀଚୀନ ହେବ ନାହିଁ । ମାଗଶୀର ମାସର ପୌର୍ଣ୍ଣମାସୀ ରଜନୀର ଅର୍ଦ୍ଧଭାଗରେ ଉତ୍କଳଦେବୀ କବିଙ୍କୁ "ଉତ୍କଳର ଗୂଢ଼ ରହସ୍ୟ ଗୋଟିଏ" ଦେଖାଇବା ନିମନ୍ତେ ନେଇଗଲେ । ପ୍ରଥମେ ଗୋଟିଏ ମନ୍ଦିରରେ ଜଣେ ଯୁବା ଓ ଜଣେ ନନ୍ଦନରତା ସୁନ୍ଦରୀ ଯୁବତୀଙ୍କୁ ସେମାନେ ଦେଖିଲେ । ଏହି ଯୁବକ ଓ ଯୁବତୀ ଚନ୍ଦ୍ର ଓ ରୋହିଣୀ । କବି ଚନ୍ଦ୍ରଙ୍କଠାରୁ ଶୁଣିଛନ୍ତି,

"କାବ୍ୟ ହୀଁ ଗଲେଣି କାବ୍ୟ ରଚିବାକୁ ରାଧାନାଥ ନାମ ବହି,
ତାହାଙ୍କ ଭାରତୀ-ବଳେ ହେବ ଖ୍ୟାତ ଭାରତେ ଉତ୍କଳମହୀ ।"

ରାଧାନାଥଙ୍କର ଉଚ୍ଛ୍ୱସିତ ପ୍ରଶଂସା କରିବାରେ ଗଙ୍ଗାଧର ଏଠାରେ ତତ୍ପର । ତାପରେ କବି ଉତ୍କଳ-ଲକ୍ଷ୍ମୀଙ୍କର ମୂର୍ତ୍ତି ଦେଖିବାକୁ ପାଇଛନ୍ତି । ଉତ୍କଳ-ଲକ୍ଷ୍ମୀଙ୍କୁ ଜଣେ ଭକ୍ତ ଆରାଧନା କରୁଥିବାର ବର୍ଣ୍ଣନା କରିଛନ୍ତି । ଏହି ବର୍ଣ୍ଣନା ମଧ୍ୟରେ କବି ରାଧାନାଥ ସାହିତ୍ୟର ନଦନଦୀ, ଗିରି, କାନନ, ହ୍ରଦ, ପୁଷ୍କରିଣୀ ପ୍ରଭୃତିର ଚିହ୍ନ ଦେଇଛନ୍ତି । ଏହି ରୂପେ ଦେଖିଲେ ଉତ୍କଳ-ଲକ୍ଷ୍ମୀ ବାସ୍ତବରେ ରାଧାନାଥ ସାହିତ୍ୟର ଏକ କାବ୍ୟଧର୍ମୀ ସମାଲୋଚନା ଗ୍ରନ୍ଥ । ଉତ୍କଳ ପ୍ରକୃତି ବର୍ଣ୍ଣନା କରିବାକୁ ଯାଇ କବି ଲେଖିଛନ୍ତି ଯେ, ଋତୁର ପର୍ଯ୍ୟାୟକ୍ରମେ ପ୍ରକୃତି ଉତ୍କଳ-ଲକ୍ଷ୍ମୀଙ୍କୁ ସେବା କରିବାରେ ସବୁବେଳେ ତତ୍ପର । ସେ ଲେଖିଛନ୍ତି,

"ଯାମିନୀ କାମିନୀ ପ୍ରିୟ ସଖୀଭାବେ
କରୁଥାଏ କେତେ ସଜ
ସୁନ୍ଦରୀ ଅଙ୍ଗରେ ବୋଳି ଦେଉଥାଏ
ମାହାର କର୍ପୂର-ରଜ ।

କେତେ ବୋଲିହୁଏ  ସ୍ନେହବଶେ ଚନ୍ଦ୍ର-
ଚନ୍ଦ୍ରିକା ଗୁରୁ ଚନ୍ଦନ
ତମିର ଛଳରେ  ମୃଗମଦ ଘୋଶ
କେବେ କରେ ପ୍ରଲେପନ ।"

ପ୍ରକୃତିର ଅପୂର୍ବ ମନୋଜ୍ଞ ପ୍ରକାଶ ଗଙ୍ଗାଧରଙ୍କ ଲେଖାରେ ଜୀବନ୍ତ ରୂପ ପରିଗ୍ରହ କରିଅଛି । ପ୍ରାତଃ କାଳରେ ଉଦ୍ୟାନରେ ପୁଷ୍ପରାଜି ବୃନ୍ତଚ୍ୟୁତ ହୋଇ ଭୂତଳରେ ପତିତ ହେବାର ଦୃଶ୍ୟକୁ ଦେଖି କବି ଲେଖିଛନ୍ତି,

"ମନ୍ଦାନିଳ ହସ୍ତେ  ତୋଳାଇ ପ୍ରଭାତେ
ପ୍ରଫୁଲ୍ଲ ପ୍ରସୂନାବଳୀ
ପ୍ରକୃତି ସୁନ୍ଦରୀ  ଦେଉଥାଇ ନିତି
ସୁର ଶିରେ ପୁଷ୍ପାଞ୍ଜଳି ।"

ଏହିପରି ଭାବରେ ଅଶେଷ ବର୍ଣ୍ଣନା ଉତ୍କଳ-ଲକ୍ଷ୍ମୀର କଳେବର ଭିତରେ ପରିଦୃଷ୍ଟ ହୁଏ ।

"ରସ-ରତ୍ନାକର"ର ଚରିତ୍ର ସୃଷ୍ଟି ଯେପରି ରାଧାନାଥଙ୍କ କାବ୍ୟର ଚରିତ୍ର ସୃଷ୍ଟିର ପରୋକ୍ଷ ପ୍ରତିବାଦ, ଠିକ୍ ସେହିପରି 'କୀଚକବଧ' ରାଧାନାଥ ସାହିତ୍ୟରେ ଥିବା ଚରିତ୍ରମାନଙ୍କର ଏକ ନୀରବ ପ୍ରତିବାଦ । କବି କୀଚକବଧର କଥାବସ୍ତୁ ମୁଖ୍ୟ ଭାବରେ ସାରଳା ମହାଭାରତରୁ ଗ୍ରହଣ କରିଅଛନ୍ତି । ସାରଳା ମହାଭାରତରୁ କେବଳ କଥାବସ୍ତୁର କଙ୍କାଳ ଗ୍ରହଣ କରି ସେଥିରେ ନିଜର କଳ୍ପନା ବିଳାସିତାର ସମ୍ମିଶ୍ରଣ କରି ଗଙ୍ଗାଧର ତାଙ୍କ ରଚନାଶକ୍ତିର ଏକ ନୂତନ ରୂପ ବିଭବ ପ୍ରଦର୍ଶନ କରିଅଛନ୍ତି । ଦାସୀ ଚପଳା

ମାୟାମନ୍ତ୍ରୀ କୀଚକକୁ କହୁଛନ୍ତି, "ଯାହାର ପାଞ୍ଚଗୋଟି ପତି ଅକ୍ଷମ, ତାର ଷଷ୍ଠ ପତି ପାଇଁ ଆପତ୍ତି କଅଣ ?" ଏହି କଥାରେ କୀଚକ ପାପ ପଥରେ ଆଗେଇଯିବା ନିମିତ୍ତ ଯଥେଷ୍ଟ ପ୍ରେରଣା ପାଇଛି । ସାମାନ୍ୟ ଅର୍ଥଲାଭ ଆଶାରେ ଚପଳା ତାକୁ ଏଥିରେ ସାହାଯ୍ୟ କରିଛି । ସୈରିନ୍ଧ୍ରୀଙ୍କ ସତୀତ୍ୱ ନିକଟରେ ଏ ପ୍ରଶ୍ନ ନିତାନ୍ତ ଅବାନ୍ତର । କୀଚକର ଅଶେଷ ପ୍ରଲୋଭନ ପ୍ରଦର୍ଶନ ଓ ସୈରିନ୍ଧ୍ରୀଙ୍କର ପ୍ରତ୍ୟାଖ୍ୟାନ ଭିତରେ କାବ୍ୟର ଶିଳ୍ପ ବୈଚିତ୍ର୍ୟ ଗଢ଼ିଉଠିଛି । ଶେଷରେ ଭୀମ କର୍ତ୍ତୃକ କୀଚକବଧ ଦ୍ୱାରା ଅଧର୍ମର ପରାଜୟ ଓ ଧର୍ମର ଜୟ ପ୍ରମାଣିତ ହୋଇଛି । କୀଚକବଧର ଭାଷା ଓ ଭାବ କାବ୍ୟଟିର ମହତ୍ତ୍ୱକୁ ରକ୍ଷା କରିପାରିଛି । କାବ୍ୟରେ ରସର ଅଖଣ୍ଡତା ଲକ୍ଷ୍ୟ କରିବାର କଥା । ବିଭିନ୍ନ ରସକୁ ଆଶ୍ରୟ କରି ରସାନୁସାରୀ ଭାଷାର ପ୍ରୟୋଗ ମେହେରଙ୍କ ବଳିଷ୍ଠ କବିପ୍ରତିଭାର ପରିଚୟ ଦେଇଛି ।

କୀଚକବଧର ରଚନା ପରେ ପୂର୍ଣ୍ଣ ୮ ବର୍ଷ ଧରି ଗଙ୍ଗାଧର ମେହେରଙ୍କ ଲେଖନୀ ନୀରବ ରହିଥିଲା । ବୟସର ଆଧିକ୍ୟ ଓ ପାରିପାର୍ଶ୍ୱିକ ଅବସ୍ଥାର ନିଷ୍ଠୁର ସମ୍ପର୍କରେ ଆସି ଗଙ୍ଗାଧର ମେହେର ଏହି ୮ଟି ବର୍ଷ ଭିତରେ ନିଜର କବିପ୍ରତିଭାର ଅଧିକ ପରିଚୟ ଦେଇପାରି ନ ଥିଲେ । ୧୯୧୦ ସାଲରେ ପୁଣି ଗଙ୍ଗାଧର ମେହେର ଲେଖନୀ ଧାରଣ କରି ସୃଷ୍ଟି କଲେ 'ଅଯୋଧ୍ୟା ଦୃଶ୍ୟ' ଓ 'ପଦ୍ମିନୀ' । 'ଅଯୋଧ୍ୟା ଦୃଶ୍ୟର' ଭାବ ଅତି କରୁଣ । ଏହାର ନାମ ଅଯୋଧ୍ୟା ଦୃଶ୍ୟ ହେଲେ ହେଁ ଯଥାର୍ଥରେ ଏହା କୌଶଲ୍ୟାଙ୍କର ଅନ୍ତରର ଦୃଶ୍ୟ । କୌଶଲ୍ୟାଙ୍କୁ କେନ୍ଦ୍ର କରି ପୌରାଣିକତାର ଆଧାରରେ ଏଥିରେ ଫୁଟିଉଠିଛି କରୁଣ ରସ । ପ୍ରଥମ ସର୍ଗରେ ରାମଚନ୍ଦ୍ରଙ୍କ ଜନ୍ମ ଓ ବନବାସ, ଦ୍ୱିତୀୟ ସର୍ଗରେ କୌଶଲ୍ୟାଙ୍କର

ଦୁଃଖ, ତୃତୀୟ ସର୍ଗରେ ରାମାଭିଷେକ । ଏହି ମତରେ ସମଗ୍ର ରାମଚରିତ ସଂକ୍ଷିପ୍ତ ରୂପରେ ବର୍ଣ୍ଣିତ । ଏ ତିନୋଟି ସର୍ଗ ଭିତରେ ଅଯୋଧ୍ୟା ଦୃଶ୍ୟରେ କରୁଣ ରସର ଉଦ୍ଦୀପ୍ତି, ଅନ୍ଧବୃଦ୍ଧି ଓ ବଳପୁ ଯେପରି ଭାବରେ ସମାବେଶିତ ହୋଇଛି, ତାହା ଗଙ୍ଗାଧରଙ୍କ ସୃଷ୍ଟି କୌଶଳର ପରିଚୟ ଦିଏ । ପୁରାଣର କଙ୍କାଳରୁ ଗଙ୍ଗାଧର ଯେଉଁ କଥାବସ୍ତୁ ଗ୍ରହଣ କରିଥିଲେ, ତାର ସାରସତ୍ତ୍ୱକୁ ସଂକ୍ଷିପ୍ତ ଭାବରେ ଆଧୁନିକ କୌଶଳରେ ଏଥିରେ ପ୍ରକାଶ କରିଛନ୍ତି ।

ଅଯୋଧ୍ୟାଦୃଶ୍ୟ ରଚନା ପରେ ମେହେରଙ୍କ ଲେଖନୀରୁ ଆତ୍ମପ୍ରକାଶ କରିଛି 'ପଦ୍ମିନୀ' କାବ୍ୟ । କୀଚକବଧ ଓ ପଦ୍ମିନୀ ଉଭୟ 'କାବ୍ୟରେ କବି ସମଶ୍ରେଣୀର କଥାବସ୍ତୁ ନିର୍ବାଚନ କରିଛନ୍ତି । ଦ୍ରୌପଦୀଙ୍କ ପ୍ରେମ ପାଇଁ କୀଚକ ଯେପରି ପାଗଳ, ଏଠାରେ ପଦ୍ମିନୀଙ୍କ ପ୍ରେମ ପାଇଁ ଆଲ୍ଲାଉଦ୍ଦିନ ସେହିପରି ପାଗଳ । ପ୍ରତାରଣା ଓ ପ୍ରଲୋଭନର ମାୟାଜାଲ ଭିତରେ ଧର୍ମର ଯେ କେବେ ପରାଜୟ ଘଟେ ନାହିଁ, ଉଭୟ କାବ୍ୟରେ ଏହା ପ୍ରମାଣିତ । 'ପଦ୍ମିନୀ'ର କଥାବସ୍ତୁ ଐତିହାସିକ । ତେଣୁ ଲେଖକ କଳ୍ପନା-ବାହୁଲ୍ୟ ପ୍ରଦର୍ଶନ କରିବାରୁ ବିରତ ହୋଇ କାବ୍ୟକୁ ବୈଚିତ୍ର୍ୟ-ଶୂନ୍ୟ କରିଛନ୍ତି । 'ପଦ୍ମିନୀ'ର ଭାଷାରେ ସେତେ ଯେପରି ପ୍ରାଣପ୍ରାଚୁର୍ଯ୍ୟ ପରିଲକ୍ଷିତ ହୁଏ ନାହିଁ । ଏହି ପଦ୍ମିନୀ କାବ୍ୟ ଅସମାପ୍ତ । 'ପଦ୍ମିନୀ' କାବ୍ୟ ବିଷୟରେ କେବଳ ଏତିକି କୁହାଯାଇ-ପାରେ ଯେ, ଗଙ୍ଗାଧର ମେହେରଙ୍କ ଜୀବନରେ ଏହା ଉଚ୍ଚାଙ୍ଗ କାବ୍ୟସୃଷ୍ଟି ନିମିତ୍ତ ଏକ ପ୍ରସ୍ତୁତି-ଭୂମି ।

ପ୍ରଣୟ-ବଲ୍ଲରୀର ପ୍ରଥମ ସର୍ଗ ୧୯୧୧ ସାଲରେ ରଚିତ ହୋଇଥିଲେ ହେଁ ଅନ୍ୟ ସର୍ଗଗୁଡ଼ିକ ୧୯୧୪ ସାଲରେ ତପସ୍ୱିନୀ ରଚନା ପରେ ରଚିତ ହୋଇଛି । କାବ୍ୟର କଥାବସ୍ତୁ ନିମିତ୍ତ କବି


Digitized by srujanika@gmail.com

କାଳିଦାସଙ୍କୁ ଗୁରୁରୂପେ ଗ୍ରହଣ କରିଛନ୍ତି । ତଥାପି କାଳିଦାସଙ୍କ ସୃଷ୍ଟିରେ ଯେଉଁ ସୌନ୍ଦର୍ଯ୍ୟ ଅଛି, ସେ ସୌନ୍ଦର୍ଯ୍ୟ ରକ୍ଷା କରିବାରେ ଗଙ୍ଗାଧର କେତେକାଂଶରେ ସମର୍ଥ ହୋଇ ପାରିନାହାନ୍ତି । କଣ୍ୱ-ଆଶ୍ରମରେ ଦୁଷ୍ମନ୍ତଙ୍କର ଶକୁନ୍ତଳାଙ୍କ ସହିତ ମିଳନ, ଏହି ମିଳନରେ ଦୁର୍ବାସାଙ୍କ ଅଭିଶାପ ଫଳରେ ବିଚ୍ଛେଦର ପରିଣତି ଏବଂ ବିଚ୍ଛେଦ ପରେ ପୁନର୍ମିଳନରେ କାବ୍ୟର କଥାବସ୍ତୁ ସୀମିତ । ପ୍ରଣୟ ବଲ୍ଲରୀରେ ପ୍ରଣୟରୂପକ ଲତା ବିଭିନ୍ନ ଅବସ୍ଥା ଦେଇ କିପରି ପରିବର୍ଦ୍ଧିତ ହୋଇଛି, ତାର ଗୋଟିଏ ଆଭାସ ସର୍ଗର ନାମକରଣରୁ ପ୍ରତିଭାତ ହୋଇଥାଏ । ଶକୁନ୍ତଳା ଏବଂ ଦୁଷ୍ମନ୍ତ, ପ୍ରିୟମ୍ବଦା ଏବଂ ଅନସୂୟା, ଦୁର୍ବାସା ଏବଂ କଣ୍ୱ ଚରିତ୍ର-ଚିତ୍ରଣରେ ଗଙ୍ଗାଧର ମୌଳିକତା ପ୍ରଦର୍ଶନ କରି ପାରିଛନ୍ତି । ପ୍ରଣୟ-ବଲ୍ଲରୀ କାବ୍ୟ-ସୃଷ୍ଟିର ବୈଶିଷ୍ଟ୍ୟ ଲକ୍ଷ୍ୟଣୀୟ ବିଷୟ ହେଉଛି ଶୃଙ୍ଗାର ରସର କ୍ରମିକ ଅଭିବୃଦ୍ଧିରେ କରୁଣ ରସର ଉଦ୍ରେକ ଓ ଅଭିବୃଦ୍ଧି ଏବଂ ସରଳ ସାବଲୀଳ ଭାଷାରେ ସଂକ୍ଷିପ୍ତ ପରିସରରେ କଥାବସ୍ତୁର ରୂପାୟନ ।

ନିର୍ବାସିତା ସୀତାଙ୍କର ଦୁର୍ବହ ଜୀବନକୁ କେନ୍ଦ୍ର କରି 'ତପସ୍ୱିନୀ' କାବ୍ୟ ରଚିତ । ବାଲ୍ମୀକି-ଆଶ୍ରମରେ ସୀତାଙ୍କର ତପସ୍ୱିନୀ ଜୀବନଯାପନ ଏହି କାବ୍ୟରେ ଚିତ୍ରିତ । ସୀତା ଏବଂ ରାମଚନ୍ଦ୍ରଙ୍କର ଚରିତ୍ରକୁ କବି ସୃଷ୍ଟିର ଉନ୍ନତ ଆଦର୍ଶରେ ଚିତ୍ରିତ କରିଛନ୍ତି । ସୀତାଙ୍କର ନିର୍ବାସନ ଦଣ୍ଡ ପାଇଁ ସୀତା ରାମଚନ୍ଦ୍ରଙ୍କ ଉପରେ ଦୋଷ ନ ଦେଇ ନିଜ ଉପରେ ଦୋଷ ଦେଇଛନ୍ତି । ଅତୀତ ଜୀବନକୁ ସ୍ମରଣ କରି ସୀତା ଖେଦୋକ୍ତି ପ୍ରକାଶ କରିବା ସଙ୍ଗେ ସଙ୍ଗେ ପୁନର୍ଜନ୍ମ ପରେ ପୁଣି ରାମଚନ୍ଦ୍ରଙ୍କ ସହିତ ମିଳିତ ହେବାପାଇଁ କଠୋର ତପସ୍ୟା କରିବାର ଇଚ୍ଛା ପୋଷଣ କରିଛନ୍ତି । କାବ୍ୟର ଶେଷ ପରିଣତି କରୁଣାତ୍ମକ ହେଲେ ହେଁ ଭାରତୀୟ କାବ୍ୟଧର୍ମ ରକ୍ଷା

କରିବାକୁ ଯାଇ ଏଇ ଶେଷ ପରିଣତିକୁ କରୁଣ ବାୟୁମଣ୍ଡଳରୁ ରକ୍ଷା କରିଛନ୍ତି । ସୀତାଙ୍କର ସ୍ୱପ୍ନ ଭିତରେ ଏକ ମିଳନାତ୍ମକ ବାୟୁମଣ୍ଡଳ ସୃଷ୍ଟି ହୋଇଛି । ତପସ୍ୱିନୀ କାବ୍ୟର କଥାବସ୍ତୁ ପାଇଁ କବି ମୁଖ୍ୟ ଭାବରେ କାଳିଦାସଙ୍କର ରଘୁବଂଶ ଉପରେ ନିର୍ଭର କରିଛନ୍ତି । ତଥାପି ନିଜର ସ୍ୱାତନ୍ତ୍ର୍ୟ ପ୍ରତିଷ୍ଠା ପାଇଁ ଗଙ୍ଗାଧର ମେହେର ଏଥିରେ କମ୍ ଚେଷ୍ଟା କରି ନାହାନ୍ତି । କାବ୍ୟର କଥାବସ୍ତୁ ନୂତନ ନ ହେଲେ ହେଁ ଗଙ୍ଗାଧରଙ୍କର ସୃଷ୍ଟି ସ୍ୱାତନ୍ତ୍ର୍ୟ ଯୋଗୁଁ 'ତପସ୍ୱିନୀ' ପ୍ରାଚୀନ ଓ ନବୀନର ଏକ ମଧୁର ମିଳନ କ୍ଷେତ୍ରରେ ପରିଣତ ହୋଇଅଛି !

ବେଦବ୍ୟାସ, ଚନ୍ଦ୍ର ରଜନୀ, ବସନ୍ତ ବାସର, ସୋମନାଥ ବିଜୟ ଓ ବର୍ଷାଚିହ୍ନ ଏହି ୫ଟି କବିତାକୁ ନେଇ କବିତା-କଲ୍ଲୋଳ ରଚିତ । ବର୍ଷାଚିହ୍ନ ଛଡ଼ା ଅନ୍ୟ ୪ଟି କବିତା ଆକାରରେ ଦୀର୍ଘ । ଏହି କବିତାଗୁଡ଼ିକର ଭାଷାରେ ସାମ୍ୟ ରକ୍ଷା କରାଯାଇ ପାରିନାହିଁ । ସ୍ଥାନେ ସ୍ଥାନେ ଏତେ କ୍ଲିଷ୍ଟ ଶବ୍ଦ ପ୍ରୟୋଗ କରାଯାଇଛି ଯେ, ପାଠକ ଗଙ୍ଗାଧରଙ୍କ ଲେଖନୀର ଲାଳିତ୍ୟ ଅନୁଭବ କରିପାରେ ନାହିଁ । କବିଙ୍କର 'ଅର୍ଘ୍ୟଥାଳୀ' ୩୯ ଗୋଟି କବିତାର ସମଷ୍ଟି । ଏହି ୩୯ ଗୋଟି କବିତା ଭିନ୍ନ ଭିନ୍ନ ସମୟରେ ଲେଖା ଯାଇଥିଲା । ଏଥିର ପ୍ରଥମ କବିତା 'ଭକ୍ତି' ସମାଲୋଚକଙ୍କଠାରୁ ଉଚ୍ଛ୍ୱସିତ ପ୍ରଶଂସା ଲାଭ କରିଅଛି । 'ଉତ୍କଳ-ଭାରତୀଙ୍କ ଭକ୍ତି'ରେ କବି ଏ ଦେଶର ସାହିତ୍ୟ ଉପରେ ବିଦେଶୀ ସାହିତ୍ୟର ପ୍ରଭାବକୁ ଲକ୍ଷ୍ୟ କରି ଭାରତୀଙ୍କ ମୁଖରେ ନିଜର ଦୁର୍ଦ୍ଦଶା ବ୍ୟକ୍ତ କରିଛନ୍ତି । ଗଣେଶଙ୍କ ଆତ୍ମକଥା, ମହାନିକାର ଓ ମଳୟର ଆବାହନ କବିତା ଗୁଡ଼ିକରେ ମେହେରଙ୍କର ସୃଷ୍ଟି-ସ୍ୱାତନ୍ତ୍ର୍ୟ ପରିଲକ୍ଷିତ ହୁଏ । ଗୌରୀଶଙ୍କର, ପଞ୍ଚାମୃତ, ବିଦୁର ପ୍ରଜାଗର ପ୍ରଭୃତି କବିତାରେ କବି ସମସାମୟିକ ସାମାଜିକ ତଥା ରାଜନୈତିକ ଚିତ୍ର ଅନେକ ଦେଇଛନ୍ତି । ନର-ମୟୂର,


Digitized by srujanika@gmail.com

ଅଲଙ୍କାରର ଆତ୍ମପ୍ରସାଦ ଏବଂ ତାହା ଓ ସମସ୍ତ କବିତା ଗୁଡ଼ିକରେ କବିଙ୍କର ଅପୂର୍ବ ପର୍ଯ୍ୟବେକ୍ଷଣ ଶକ୍ତିର ପରିଚୟ ମିଳିଛି । ମାତୃଭୂମି କବିତାରେ ମାନବ ହୃଦୟର ସଂକୀର୍ଣ୍ଣତାର ବିଲୋପ ସାଧନର ଚିତ୍ର ଦିଆଯାଇଛି । ଏହି ୩୯ ଗୋଟି ଖଣ୍ଡକବିତାରେ ଗଙ୍ଗାଧର ମେହେରଙ୍କର ମୌଳିକତା, ଜାତୀୟତା, ଦେଶପ୍ରୀତି, ସାହିତ୍ୟ-ପ୍ରୀତି ପ୍ରଭୃତି ଉତ୍ତମ ରୂପେ ପ୍ରକାଶ ପାଇଛି । ଖଣ୍ଡ କବିତାର ଉପାସକ ରୂପେ ଗଙ୍ଗାଧର ମେହେର ପ୍ରାଚୀନ ଓ ନବୀନ ମଧ୍ୟରେ ଏକ ଯୋଗସୂତ୍ର ସ୍ଥାପନର କାର୍ଯ୍ୟ କରିଛନ୍ତି ।

'ଭାରତୀ-ଭାବନା' ଗଙ୍ଗାଧର ମେହେରଙ୍କର ଜାତୀୟ ପ୍ରୀତିର ଏକ ଜ୍ୱଳନ୍ତ ଉଦାହରଣ । କଲ୍ୟାଣ ଆହାରୀ ରାଗରେ ସତରଟି ପଦରେ ଏହା ରଚିତ । ବିଦେଶୀ ଶାସନ ଯୋଗୁଁ କବି ଯେପରି ମର୍ମନ୍ତୁଦ ବ୍ୟଥା ଅନୁଭବ କରିଛନ୍ତି, ସେହିପରି ସ୍ୱାଧୀନ ରାଜ୍ୟର ପ୍ରତିଷ୍ଠା ପାଇଁ ବ୍ୟାକୁଳ ହୋଇପଡ଼ିଛନ୍ତି । ଏଥିରେ କେତେକ ଶବ୍ଦର ଶ୍ଳିଷ୍ଟ ପ୍ରୟୋଗ ଅତ୍ୟନ୍ତ ପାଣ୍ଡିତ୍ୟପୂର୍ଣ୍ଣ । ଏହି ଶ୍ଳିଷ୍ଟ ପ୍ରୟୋଗ ଯୋଗୁଁ ଗୋଟିଏ ଅର୍ଥରେ ଶ୍ରୀକୃଷ୍ଣ ଓ ଆଉ ଗୋଟିଏ ଅର୍ଥରେ ଇଂରେଜ ସରକାରପ୍ରତି ଆକ୍ଷେପ ବର୍ଣ୍ଣିତ । ଏହିପରି ଭାବରେ ଦେଖିବାକୁ ଗଲେ ଗଙ୍ଗାଧର ମେହେରଙ୍କ ସୃଷ୍ଟି ପର୍ଯ୍ୟାୟରେ ମୁଖ୍ୟତଃ ପ୍ରାଚୀନ କଥାବସ୍ତୁର ନୂତନ ରୂପାୟନ ତାଙ୍କର ଏକ ବିଶିଷ୍ଟ ଦାନ । ଆଧୁନିକ ଯୁଗର ଜଣେ ଶ୍ରେଷ୍ଠ କବି ହିସାବରେ ସେ ନିଜର ଜାତୀୟତାକୁ ଓ ଭାରତୀୟ ସଂସ୍କୃତିର ଅକ୍ଷୁଣ୍ଣତାକୁ ବଞ୍ଚାଇ ରଖିବାକୁ ସତତ ବ୍ରତୀ ଥିଲେ । ଜୀବନରେ ସ୍ୱଳ୍ପଶିକ୍ଷା ପାଇ ଦାରିଦ୍ର୍ୟର କଷାଘାତ ଭିତରେ ଉତ୍କଳ ଭାରତୀଙ୍କର ଆରାଧନା କରିବାକୁ ଯାଇ ସେ ଯେ ଜଣେ ଶ୍ରେଷ୍ଠ ସାଧକ ରୂପେ ନିଜର ପରିଚୟ ଦେଇଛନ୍ତି, ଏଥିରେ ସନ୍ଦେହର ଅବକାଶ ନାହିଁ ।

## (ଗ) ମେହେର ସାହିତ୍ୟରେ ଚରିତ୍ର-ଚିତ୍ରଣ

ଗଙ୍ଗାଧର ମେହେରଙ୍କ କାବ୍ୟରଚନା ସବୁବେଳେ ଭାରତୀୟ ପୌରାଣିକ ବା ଐତିହାସିକ କଥାବସ୍ତୁକୁ ଭିତ୍ତି କରି ଗଢ଼ିଉଠିଛି । କାବ୍ୟରଚନା ପାଇଁ କବି ଉନ୍ନତ ଚରିତ୍ର ଗ୍ରହଣ କରିନେବାରେ ଯେତିକ ଯୁକ୍ତି ଅଛି, ଦୁର୍ବଳ ଚରିତ୍ର ଗ୍ରହଣ କରିନେବାରେ ସେତିକ ଯୁକ୍ତି ଅଛି । ଦୁର୍ବଳ ଚରିତ୍ରମାନଙ୍କର କ୍ରିୟାକଳାପ ପ୍ରକାରାନ୍ତରରେ ଉନ୍ନତ ଚରିତ୍ରର ବଳିଷ୍ଠତା ପ୍ରତିପାଦନ କରିବାରେ ସାହାଯ୍ୟ କରେ । ଗଙ୍ଗାଧର ମେହେର ଏ ଦେଶର ଜାତୀୟ ଜୀବନର ଏକ ସନ୍ଧିକ୍ଷଣରେ ସାହିତ୍ୟ ସାଧନା କରିଥିବାରୁ ଜାତିର ମହତ୍ତ୍ୱ ରକ୍ଷାପାଇଁ ଭାରତୀୟ ଆଦର୍ଶରେ ଅନୁପ୍ରାଣିତ ହୋଇ ତାଙ୍କର କାବ୍ୟ ସୃଷ୍ଟି ପାଇଁ ଉନ୍ନତ ଚରିତ୍ରଗୁଡ଼ିକୁ ବାଛି ନେଇଛନ୍ତି । ଏହି ଉନ୍ନତ ଚରିତ୍ରମାନଙ୍କର ଚିତ୍ରଣରେ ଓଡ଼ିଶାର ସାମାଜିକ ଜୀବନ ଉପରେ ପ୍ରଭାବ ପକାଇବା ନିମିତ୍ତ ସେ ଚେଷ୍ଟା କରିଛନ୍ତି । ସମଗ୍ର ମେହେର ସାହିତ୍ୟ-ସୃଷ୍ଟି ଭିତରେ ପାଠକ ଲକ୍ଷ୍ୟ କରେ, ସତେ ଯେପରି ଗଙ୍ଗାଧର ମେହେର ନାରୀ ଚରିତ୍ରକୁ ପ୍ରାଧାନ୍ୟ ଦେବାରେ ତତ୍ପର ହୋଇପଡ଼ିଛନ୍ତି । କୀଚକବଧରେ ସୈରିନ୍ଧ୍ରୀଙ୍କର ଚରିତ୍ର ଚିତ୍ରଣରେ କବି ପୌରାଣିକ ମର୍ଯ୍ୟାଦାକୁ ରକ୍ଷା କରିଛନ୍ତି । ଦାସୀ ଚପଳା କୀଚକ ଆଗରେ ପ୍ରକାଶ କରିଛି ଯେ, ଦ୍ରୌପଦୀଙ୍କର ପାଞ୍ଚଜଣ ପତି ଅଛନ୍ତି । ଆଉ ଜଣେ ପତି ଗ୍ରହଣ କରିନେବାରେ କ୍ଷତି କଅଣ ? ମାତ୍ର ସତୀ ସୈରିନ୍ଧ୍ରୀଙ୍କ ପକ୍ଷରେ ଏ ପ୍ରସ୍ତାବ ନିତାନ୍ତ ହେୟ । କୀଚକ ପ୍ରଲୋଭନର ମାୟାଜାଲରେ ସୈରିନ୍ଧ୍ରୀଙ୍କୁ ଅବରୁଦ୍ଧ କରିବାକୁ ଚେଷ୍ଟା କରିଛି, ସୈରିନ୍ଧ୍ରୀଙ୍କ ସହିତ ଏକାଠି ମିଳିତ ହୋଇଛି; କିନ୍ତୁ ନିଜର ସତୀତ୍ୱରେ ଅଟଳ ରହି ସୈରିନ୍ଧ୍ରୀ ଧର୍ମ-ପରୀକ୍ଷାର ସମ୍ମୁଖୀନ ହୋଇଛନ୍ତି । ସୈରିନ୍ଧ୍ରୀ ଏଠାରେ ସକଳ

ପ୍ରକାର ମାନବର ଦୋଷ ଦୁର୍ବଳତାର ବହୁ ଊର୍ଦ୍ଧ୍ୱରେ । ପାପାସକ୍ତ କୀଚକ ସୈରିନ୍ଧ୍ରୀଙ୍କୁ ଲାଭ କରିବା ଆଶାରେ ନିଜର ମନ ଭିତରେ ସ୍ୱପ୍ନର ଇନ୍ଦ୍ରଜାଲ ସୃଷ୍ଟି କରିଛି । ଗଙ୍ଗାଧର ମେହେର କୀଚକର ଏହି ମନୋଭାବ ବ୍ୟକ୍ତ କରିବାକୁ ଯାଇ କୀଚକ ଚରିତ୍ରର ରୂପ ପ୍ରକାଶ କରିଛନ୍ତି । କୀଚକ କଳ୍ପନା କରିଛି,

"ଅଟ୍ଟାଳୀ ଉପରେ ଥାଇ କେବେ ମୋତେ
ଦେଖି ଦେଉଥିବ ହସି
ସ୍ୱର୍ଗ ସୁଖରାଶି ଆସି କେବେ ମୋର
ହାତେ ପଡ଼ୁଥିବ ଖସି ।
ନିଭୃତ କକ୍ଷରେ ଭେଟି କେବେ ଅବା
ଚିବୁକ ଚୁମ୍ବିବ ତାର
ପ୍ରେମ-ବିସ୍ଫାରିତ ଶ୍ରୀମୁଖ କମଳ
ଦେଖୁଥିବ ବାରମ୍ବାର ।"

ବିବାହିତା ନାରୀପ୍ରତି ଏହି ପ୍ରକାର ପାପାସକ୍ତ ମନୋବୃତ୍ତି କୀଚକ ଚରିତ୍ରର ଯାଥାର୍ଥ୍ୟ ପ୍ରକାଶ କରିବାପାଇଁ ଯଥେଷ୍ଟ ।

'ପ୍ରଣୟ-ବଲ୍ଲରୀ' କାବ୍ୟରେ କବି ଶକୁନ୍ତଳାଙ୍କ ଚରିତ୍ରରେ ଜଣେ ଆଦର୍ଶ ପ୍ରେମିକାର ଚିତ୍ର ଦେଇଛନ୍ତି । ଯୌବନର ଯାଦୁକରୀ ପରିସରରେ ଦୁଷ୍ମନ୍ତଙ୍କ ସହିତ ତାଙ୍କର ସାକ୍ଷାତ ଏବଂ ହୃଦୟ-ବିନିମୟ ଭିତରେ ଶକୁନ୍ତଳା କେବଳ ପ୍ରେମିକା ଶକୁନ୍ତଳା । ଦୁଷ୍ମନ୍ତଙ୍କ ପ୍ରେମରେ ସେ ଏତେଦୂର ପାଗଳିନୀ ଯେ, ଆଶ୍ରମ-ବାସିନୀ ହୋଇ ମଧ୍ୟ ଦୁର୍ବାସାଙ୍କର ଉପସ୍ଥିତି ସେ ଲକ୍ଷ୍ୟ କରିପାରି ନାହାନ୍ତି । ଦୁର୍ବାସାଙ୍କ ଅଭିଶାପ ଫଳରେ ତାଙ୍କ ପ୍ରେମ ରାଜ୍ୟରେ ଆସିଛି ଦୁର୍ବିପାକର ଝଡ଼ । ପତିଗୃହକୁ ଯାଇ ସେ ପ୍ରତ୍ୟାଖ୍ୟାତା ହୋଇଛନ୍ତି


Digitized by srujanika@gmail.com

କେବଳ ଏଇ ଦୁର୍ବାସାଙ୍କ ଅଭିଶାପ ଫଳରୁ । ତା'ପରେ ପତିଙ୍କ ସହିତ ପୁନର୍ମିଳନ ହେବାପର୍ଯ୍ୟନ୍ତ ଶକୁନ୍ତଳାଙ୍କର ଚରିତ୍ରର ବୈଶିଷ୍ଟ୍ୟ କିଛି ଦେଖାଯାଏ ନାହିଁ । ତାଙ୍କର ସଖୀ ଅନସୂୟା ଏବଂ ପ୍ରିୟମ୍ବଦା ଚରିତ୍ର ଦୁଇଟି କେବଳ କାବ୍ୟଶାସ୍ତ୍ର ଅନୁସାରେ ସଖୀର କାର୍ଯ୍ୟ କରିଛନ୍ତି । କଣ୍ୱ ଆଶ୍ରମରୁ ବିଦାୟ ନେବାବେଳେ କଣ୍ୱଙ୍କର ଶକୁନ୍ତଳାଙ୍କ ପ୍ରତି ଉପଦେଶ କଣ୍ୱ ଚରିତ୍ରର ମହତ୍ତ୍ୱ ପ୍ରତିପାଦନ କରେ । ପତିଗୃହରେ ଶକୁନ୍ତଳା କପରି ଭାବରେ ନିଜର କର୍ତ୍ତବ୍ୟ ସମ୍ପାଦନ କରିବେ, ସେ ବିଷୟରେ ଅତି ପ୍ରାଞ୍ଜଳ ଭାବରେ କଣ୍ୱ ଉପଦେଶ ଦେଇଛନ୍ତି । ଦୁଷ୍ମନ୍ତଙ୍କୁ ଜଣେ ଆଦର୍ଶ ନରପତି ହିସାବରେ ଚିତ୍ରିତ କରିବାକୁ ଯାଇ ଗଙ୍ଗାଧର ମେହେର ଦୁଷ୍ମନ୍ତଙ୍କର ଆଦର୍ଶବାଦ ଯଥେଷ୍ଟ ଭାବରେ ପ୍ରଖ୍ୟାପନ କରିଥିଲେ ହେଁ କଥାବସ୍ତୁଗତ ପୌରାଣିକତା ଭିତରେ ତାହା ବିଶେଷ ଭାବରେ ଆକର୍ଷଣୀୟ ହୋଇନାହିଁ ।

ତପସ୍ୱିନୀ କାବ୍ୟରେ ରାମଚନ୍ଦ୍ର ଏବଂ ସୀତାଙ୍କୁ କବି ଯଥାର୍ଥରେ ଆଦର୍ଶ ପରିବେଶରେ ଚିତ୍ରିତ କରିଛନ୍ତି । ଗର୍ଭବତୀ ସୀତାଙ୍କୁ ଭାଗୀରଥୀ ତୀରରେ ଯେତେବେଳେ ଲକ୍ଷ୍ମଣ ଛାଡ଼ିଦେଇ ଗଲେ, ସୀତା ସେତେବେଳେ ଦୁଃଖରେ କ୍ରନ୍ଦନ କରିଛନ୍ତି; କିନ୍ତୁ ତାଙ୍କ ଭାଗ୍ୟର ଏଇ ଚରମ ଦୁର୍ଦ୍ଦିନରେ ନିର୍ବାସନ ଦଣ୍ଡ ଦେଇଥିବାଯୋଗୁଁ ନିଜର ପତିଙ୍କୁ ସେ ଦୋଷ ଦେଇ ନାହାନ୍ତି । ଏଥିପାଇଁ ସେ ନିଜକୁ ଦୋଷୀ ସାବ୍ୟସ୍ତ କରିଛନ୍ତି । ଶାସକର କଠୋର ଦାୟିତ୍ୱରେ ତାଙ୍କୁ ନିର୍ବାସିତ କଲେ ହେଁ ତାଙ୍କ ବିଚ୍ଛେଦରେ ରାମଚନ୍ଦ୍ର ଯେ ଭାଙ୍ଗି ପଡ଼ିଥିବେ, ଏ କଥା ସେ ଅନୁଭବ କରିଛନ୍ତି ଏବଂ ସେଥିପାଇଁ କାମନା କରିଛନ୍ତି, ପ୍ରଜାଙ୍କର ସୁଖ ଲାଗି ଯଦି ପ୍ରାଣସମା ସୀତାଙ୍କୁ ବିସର୍ଜନ କରିବାକୁ ପଡ଼େ, ତେବେ ସୁଦ୍ଧା ସେ ପଛାଇବେ ନାହିଁ, ଏହି ଯେଉଁ କଥା ରାମଚନ୍ଦ୍ର ଅଷ୍ଟାବକ୍ର ମୁନିଙ୍କୁ କହିଥିଲେ ସେ କଥାକୁ ରାମଚନ୍ଦ୍ର ସ୍ମରଣ


Digitized by srujanika@gmail.com

କରିବା ଉଚିତ । ପତିଙ୍କଦ୍ୱାରା ନିର୍ବାସିତା ସୀତା ବାଲ୍ମୀକି ଆଶ୍ରମରେ ତପସ୍ୱିନୀର ଜୀବନ ଯାପନ କରିଛନ୍ତି । ଅନୁକମ୍ପା ଏବଂ ଆଶ୍ରମ-ବାସିନୀ ମୁନି କନ୍ୟାଗଣଙ୍କ ସହିତ ତାଙ୍କର ଏହି ନୂତନ ଜୀବନରେ ଯେତେବେଳେ ପତିଙ୍କ କଥା ବା ଅତୀତ ଜୀବନର କଥା ମନେ ପଡ଼ିଯାଏ, ସେତେବେଳେ ତାଙ୍କର ବିଚ୍ଛେଦକୁ ନିଜର ଭାଗ୍ୟର ଦୋଷ ଭାବି ପତିଙ୍କର ଗୁଣଗାନ କରନ୍ତି । ଯେତେବେଳେ ସେ ଶୁଣିବାକୁ ପାଇଛନ୍ତି ଯେ, ରାମଚନ୍ଦ୍ର ଅଶ୍ୱମେଧ ଯଜ୍ଞ କରୁଛନ୍ତି, ସେତେବେଳେ ତାଙ୍କ ହୃଦୟର ସବୁ ଅଭିମାନ ଝରିପଡ଼ିଛି ଏବଂ ସେ ପତିଙ୍କ ପାଖକୁ ଲେଖିଛନ୍ତି, "କେଉଁ ଭାଗ୍ୟବତୀ ନାରୀ ଜୀବନରେ କେଉଁ ସ୍ଥାନରେ କେତେ କାଳ କି ତପସ୍ୟା କରିଥିଲି, ଯାହା ଫଳରେ କି ସେ ତୁମକୁ ପତିରୂପେ ପାଇଲା । ମତେ ଏତିକି କଥା ଜଣାଇଦେଲେ ମୋର ପରବର୍ତ୍ତୀ ଜୀବନରେ ମୁଁ ସେହି ତପସ୍ୟା କରିବି ।" ଅଭିମାନରେ ଯେତେବେଳେ ସୀତାଙ୍କ ହୃଦୟ ଦୋହଲି ଯାଇଛି, ପତ୍ର ଲେଖିବା ପରେ ଯେତେବେଳେ ସେ ଶୁଣିବାକୁ ପାଇଛନ୍ତି ଯେ, ତାଙ୍କର ସୁବର୍ଣ୍ଣ ପ୍ରତିମା ସ୍ଥାପନ କରି ରାମଚନ୍ଦ୍ର ଅଶ୍ୱମେଧ ଯଜ୍ଞ ସମ୍ପନ୍ନ କରୁଛନ୍ତି, ସେତେବେଳେ ସେ ନିଜକୁ ପରମ ଭାଗ୍ୟବତୀ ଭାବି ଆତ୍ମହରା ହୋଇ-ପଡ଼ିଛନ୍ତି । ନିଦ୍ରାରେ ସ୍ୱପ୍ନ ଦେଖିଛନ୍ତି ଯେ, ରାମଚନ୍ଦ୍ରଙ୍କ ସହିତ ତାଙ୍କର ପୁନର୍ମିଳନ ହୋଇଯାଇଛି ଏବଂ ଏହି ସ୍ୱପ୍ନ ଦେଖି ନିଦ୍ରିତା ସୀତା ପରମ ଆତ୍ମତୃପ୍ତି ଲାଭ କରିଛନ୍ତି । ସୀତାଙ୍କୁ ପତିପ୍ରାଣା, ଆଦର୍ଶ ହିନ୍ଦୁରମଣୀ ରୂପେ ଚିତ୍ରିତ କରିବାକୁ ଯାଇ ଗଙ୍ଗାଧର ମେହେର ଭାରତୀୟ ହିନ୍ଦୁନାରୀର ଉଜ୍ଜ୍ୱଳ ଆଦର୍ଶ ଚିତ୍ରିତ କରିଛନ୍ତି । ସୀତା ଯେତେବେଳେ ଅନୁଭବ କରିଛନ୍ତି ଯେ, ଏ ଜୀବନରେ ରାମଚନ୍ଦ୍ରଙ୍କ ସହିତ ତାଙ୍କର ମିଳନ ଅସମ୍ଭବ, ସେତେବେଳେ ସେ କାମନା କରିଛନ୍ତି—

"ମୋ ତନୁ ଦଗ୍ଧ ହେଲେ ହେବ ତ ଖାର
କରାଇ ଦେବ ତାକୁ ପାଦପେ ସାର
ସେ ଚରୁ କାଷ୍ଠ ଦେଇ ବର୍ଦ୍ଧକୀ ହସ୍ତେ
କରାଇ ଦେବ ପ୍ରଭୁ-ପାଦୁକା ମତେ ।"

ବିଦଗ୍ଧ ଚନ୍ତାମଣିରେ ଶ୍ରୀ ରାଧାଙ୍କର ଏହି ପ୍ରକାର ଏକ କାମନାର ଚିତ୍ର ଦେଖିବାକୁ ମିଳେ । ହେଲେ ହେଁ ଗଙ୍ଗାଧରଙ୍କର ଉକ୍ତ ଚିତ୍ର ସେ ଚିତ୍ର ଅପେକ୍ଷା କେତେକାଂଶରେ ଭିନ୍ନ । ପତି ସେ ଏକମାତ୍ର ପତ୍ନୀର ସମସ୍ତ ଆଶା ଭରସାର ମୂଳ, ଏ କଥା ଗଙ୍ଗାଧର ସୀତା ଚରିତ୍ରର ପ୍ରତ୍ୟେକ ଛତ୍ରରେ ବର୍ଣ୍ଣନା କରିଛନ୍ତି ।

ନାରୀ ଚରିତ୍ର ପ୍ରତି ଗଙ୍ଗାଧରଙ୍କର କେତେ ସୂକ୍ଷ୍ମ ଦୃଷ୍ଟି ଥିଲା, ତାହା ତପସ୍ୱିନୀ କାବ୍ୟର ମୁଖବନ୍ଧରୁ ସ୍ପଷ୍ଟ ଭାବରେ ଜଣାଯାଏ । ଗଙ୍ଗାଧର ମେହେର ଲେଖିଛନ୍ତି, "ବଙ୍ଗ ପାଠକବୃନ୍ଦ ଏଥିରୁ ମୋର କୃତିତ୍ୱକୁ ଲକ୍ଷ୍ୟ ନ କରି ନିଜ ନିଜର ହୃଦୟସ୍ଥ ସୀତାଙ୍କର ଉଜ୍ଜ୍ୱଳ ନିର୍ମଳ ଓ ପବିତ୍ର ଚରିତ୍ର-ଚିତ୍ରିତ-ସ୍ମୃତିପଟକୁ ଥରେ ଥରେ ଉଦ୍‌ଘାଟନ କରି ନାରୀ ହୃଦୟର ଉନ୍ନତି ବିଧାନ କରିବେ; ଏହି ମାତ୍ର ଆଶା ।"

ଆଦର୍ଶ ନରପତି ହିସାବରେ ଏବଂ ଜଣେ ଶ୍ରେଷ୍ଠ ପ୍ରେମିକ ରୂପେ ରାମଚନ୍ଦ୍ରଙ୍କର ଚରିତ୍ର ଚିତ୍ରଣ କରିବାକୁ ଯାଇ ଗଙ୍ଗାଧର ମେହେର କର୍ତ୍ତବ୍ୟ ଭାରରେ ବ୍ରସ୍ତ ରାମଚନ୍ଦ୍ରଙ୍କର ପ୍ରେମିକତ୍ୱ ଅପେକ୍ଷା ଶାସକତ୍ୱର ମହତ୍ତ୍ୱ ପ୍ରତିପାଦନ କରିଛନ୍ତି । ପ୍ରଜାମାନଙ୍କର ମନୋରଞ୍ଜନ ନିମିତ୍ତ ଯେତେ କଠିନ ହେଲେ ହେଁ ଶାସକକୁ ତାର ଦାୟିତ୍ୱ ସମ୍ପନ୍ନ କରିବାକୁ ପଡ଼େ । ରାମଚନ୍ଦ୍ର ତାଙ୍କ ପ୍ରାଣପ୍ରତିମା ସୀତାଙ୍କୁ ବିସର୍ଜନ ଦଣ୍ଡ ଦେଇଛନ୍ତି । ଶାସକ ହିସାବରେ ପତ୍ନୀଙ୍କୁ

ବିସର୍ଜନ ଦଣ୍ଡ ଦେଲେ ହେଁ ପତି ହିସାବରେ, ପ୍ରେମିକ ହିସାବରେ ରାମଚନ୍ଦ୍ରଙ୍କର ହୃଦୟ କାନ୍ଦଉଠିଛି । ରାମଚନ୍ଦ୍ର କହିଛନ୍ତି,

"ନାହିଁ ସୀତା ଘରେ ହୃଦ-ପ୍ରେମ-ସରେ
ମୋ ପ୍ରିୟ କମଳ-କଳି
ପଡ଼ିଅଛି ଫୁଟି ମକରନ୍ଦ ଲୁଟି
କରୁଅଛି ମନ-ଅଳି ।
ନୟନ ଯୁଗଳ କାହିଁକି ବିକଳ
ହୋଇ ଛାଡ଼ୁଅଛି ଜଳ
ଶୁଖି ଗଲେ ସର କମଳିନୀ ମୋର
ହୋଇଯିବ ଟଳଟଳ ।"

ଏହିପରି ଭାବରେ ରାମଚନ୍ଦ୍ରଙ୍କର ସନ୍ତପ୍ତ ହୃଦୟର ବ୍ୟଥା ଯଥେଷ୍ଟ ଭାବରେ ପ୍ରକାଶ ପାଇଛି । ଆଦର୍ଶ ଶାସକ ହିସାବରେ ରାମଚନ୍ଦ୍ରଙ୍କୁ କବି ଜଣେ ବାଜିକର ସହିତ ତୁଳନା କରିଛନ୍ତି । ସେ ଲେଖିଛନ୍ତି,

"ମାୟାକାର ପରି ଦଣ୍ଡ ଗୋଟି ଧରି
ସମଦୃଷ୍ଟି ସମଭାବେ
ରାଜତ୍ୱ-ରଜ୍ଜୁରେ ଚାଲିସି ଭୁଜରେ
ନିଜ ଜୀବନ ନ ଭାବେ ।
ଯଦି ବାଜିକର ରଜ୍ଜୁରେ ପଦୁର
ଦେଲାରୁ ନ ଯିବ ଖୁଲି
ତାଳି ମାରି ଥୋକେ ହସିଦେବେ ଲୋକେ
ବାଦ୍ୟକାର ଦେବ ଗାଳି ।

ପ୍ରିୟା ମଇଥିଳୀ— ବରଦେ ଶିଥିଳୀ—
କୃତ କର ପ୍ରାଣ ଯେବେ
ନ କରିବ କାର୍ଯ୍ୟ ମାନବ-ସମାଜ
ଆଦୃତ ଗଞ୍ଜିବେ ତେବେ ।”

ରାଜ୍ୟ ଶାସନରେ ନିଜର ହୃଦୟକୁ ଜାଳି ପୋଡ଼ି ଦେଇ ଶାସକ ପ୍ରଜାର ସୁଖ ଦେଖିବାକୁ ବାଧ୍ୟ । ତେଣୁ କବି ଶାସକକୁ ଜଳଦ ସହିତ ତୁଳନା କରି କହିଛନ୍ତି,

“ହୃଦ ପଚ୍ଛେ ଜ୍ୱଳେ ବିଦ୍ୟୁତ ଅନଳେ
ଜଳ ଦାନେ ଘନ ବାଧ୍ୟ
ସୁଖ ତେଜି ରାଜା ତୋଷିବ ପରଜା
ତେବେ ତ ପରମାରାଧ୍ୟ ।”

ଏହିପରି ଭାବରେ ରାମଚନ୍ଦ୍ରଙ୍କର ଚରିତ୍ର ଚିତ୍ରଣ କରିବାକୁ ଯାଇ କବି ପ୍ରତ୍ୟକ୍ଷ ଭାବରେ ଏକ ଆଦର୍ଶ ଶାସକର ଚରିତ୍ର କିପରି ହେବା ଉଚିତ, ତାହା ନିର୍ଦ୍ଧାରଣ କରିଅଛନ୍ତି । ରାମଚନ୍ଦ୍ରଙ୍କର ଚରିତ୍ର ଚିତ୍ରଣ ଦେଖିଲେ ଯେ କୌଣସି ପାଠକ ଭାବିବ ଯେ, ଗଙ୍ଗାଧର ମେହେର ରାମଚନ୍ଦ୍ରଙ୍କ ଚରିତ୍ର ଜରିଆରେ ସେତେବେଳକାର ଶାସକ ଗୋଷ୍ଠୀର ହୃଦରାଜ୍ୟରେ ପରିବର୍ତ୍ତନ ଆଣିବାର ପ୍ରୟାସ କରିଛନ୍ତି ।

ତପସ୍ୱିନୀ କାବ୍ୟରେ ଅନ୍ୟ ଯେଉଁ କେତେକ ଗୌଣ ଚରିତ୍ର ଦେଖାଯାଆନ୍ତି, ସେମାନଙ୍କର ଅବଦାନ ମୁଖ୍ୟ ଚରିତ୍ରମାନଙ୍କର ମହତ୍ତ୍ୱ ବୃଦ୍ଧି କରିବା ନିମିତ୍ତ ପ୍ରଯୋଜିତ । ଅନୁକମ୍ପା ଚରିତ୍ର ଗଙ୍ଗାଧର ମେହେରଙ୍କ ସ୍ୱକୀୟ ସୃଷ୍ଟି ହେଲେ ହେଁ ଅନୁକମ୍ପାଙ୍କର

ନାମକରଣର ଯାଥାର୍ଥ୍ୟ ତାଙ୍କ ଚରିତ୍ରରେ ପ୍ରକାଶ ପାଇଛି । ବାଲ୍ମୀକିଙ୍କୁ ନୂତନ କରି ଚିହ୍ନାଇ ଦେବାର ପ୍ରୟାସ କୌଣସି ଭାରତୀୟ କବି ପକ୍ଷରେ ଯେତିକି ସମୀଚୀନ ନୁହେଁ, ସେତିକି ଅବାନ୍ତର ମଧ୍ୟ । ତେଣୁ ବାଲ୍ମୀକି ଚରିତ୍ରର ମହତ୍ତ୍ୱ ପାଇଁ ଗଙ୍ଗାଧର ଅଧିକ କଷ୍ଟ କଲପରି ମନେ ହୁଏ ନାହିଁ ।

ମେହେରଙ୍କ ସୃଷ୍ଟି-ପର୍ଯ୍ୟାୟରେ ଆଧୁନିକ ଜନସମାଜର ଚରିତ୍ର ଗଠନର ବିଶ୍ଳେଷଣ ନିମିତ୍ତ ଯେତିକି ଉପାଦାନ ମିଳେ, ଆଧୁନିକ ଜୀବନକୁ ସୁନିୟନ୍ତ୍ରିତ କରିବା ଲାଗି ସେତିକି ପ୍ରେରଣା ମଧ୍ୟ ମିଳେ । ତେଣୁ ଗଙ୍ଗାଧର ସାହିତ୍ୟ-ସମୀକ୍ଷାରେ ଚରିତ୍ର ଚିତ୍ରଣ ଏକ ବିଶିଷ୍ଟ ରୂପ ଲାଭ କରିବାର ଦେଖାଯାଏ ।

## (୪) ମେହେର-ସାହିତ୍ୟରେ ପ୍ରକୃତି-ଚିତ୍ରଣ

ଆଧୁନିକ ଯୁଗର ସ୍ରଷ୍ଟା କବିବର ରାଧାନାଥ ତାଙ୍କର କାବ୍ୟ କବିତାରେ ପ୍ରକୃତିକୁ ବିଶେଷତଃ ଉତ୍କଳ ପ୍ରକୃତିକୁ ଏକ ଅପୂର୍ବ ରୂପ ପ୍ରଦାନ କରିଅଛନ୍ତି । ରାଧାନାଥଙ୍କ ପୂର୍ବରୁ ପ୍ରକୃତି କେବଳ କାବ୍ୟର ଆନୁସଙ୍ଗିକ ବିଭବ ରୂପେ କବିମାନଙ୍କର ଲେଖାରେ ଚିତ୍ରିତ ହେଉଥିଲା । କବିବର ରାଧାନାଥ ପ୍ରକୃତିକୁ ଏକ ନୂତନ ଜୀବନ୍ୟାସ ଦେଇ ତାଙ୍କର କାବ୍ୟ କବିତାରେ ମୁଖ୍ୟ ସ୍ଥାନ ଦେଲେ । ତାଙ୍କର ଚିଲିକା କାବ୍ୟରେ ପ୍ରକୃତି କେବଳ କାବ୍ୟ ରଚନାର ଉତ୍ସ । ରାଧାନାଥଙ୍କର ପ୍ରକୃତି ପ୍ରତି ମନୋଭାବ ପ୍ରଦର୍ଶନ କରି ତାଙ୍କର ସମ-ସାମୟିକ ଓ ପରବର୍ତ୍ତୀ କାଳର କବିମାନେ ତାଙ୍କର ପଦାଙ୍କ ଅନୁସରଣ କରିଅଛନ୍ତି । ଗଙ୍ଗାଧର ମେହେର ରାଧାନାଥଙ୍କ ପଦାଙ୍କ ଅନୁସରଣ କରି ଉତ୍କଳ-ଲକ୍ଷ୍ମୀ ରଚନାରେ ଉତ୍କଳର ମଞ୍ଜୁଳ ପ୍ରକୃତିକୁ ରୂପଦାନ କରିଛନ୍ତି । ଉତ୍କଳ-ଲକ୍ଷ୍ମୀରେ ପ୍ରକୃତିକୁ ସେ ସକ୍ରିୟ ନ

କବି ଉତ୍କଳ-ପ୍ରକୃତିର ମନୋରମତ୍ୱ ପ୍ରକାଶ କରିବାରେ ସମର୍ଥ ହୋଇଅଛନ୍ତି । ତାଙ୍କର ଐତିହାସିକ କାବ୍ୟରେ ଆନୁସଙ୍ଗିକ ଭାବରେ ପ୍ରକୃତି ସ୍ଥାନ ପାଇଛି । ପ୍ରଣୟ-ବଲ୍ଲରୀରେ କେତେକ ସ୍ଥଳରେ ପ୍ରକୃତି ଆନୁସଙ୍ଗିକ ଓ କେତେକ ସ୍ଥଳରେ ସକ୍ରିୟ । ମାତ୍ର ତପସ୍ୱିନୀ କାବ୍ୟରେ ପ୍ରକୃତି ମୁଖ୍ୟ ଭାବରେ ସକ୍ରିୟ ଅଂଶ ଗ୍ରହଣ କରିଛି । ସୀତା ଯେତେବେଳେ ନିର୍ବାସିତା ହୋଇ ଭାଗୀରଥୀ କୂଳରେ ନିପତିତା, ସେତେବେଳେ ନିଜ ବଂଶର ଏ ଦୁର୍ବିପାକରେ ଲଜ୍ଜିତ ସୂର୍ଯ୍ୟଦେବ ନିଜର ମୁହଁ ଲୁଚାଇ ଦେଇଛନ୍ତି । ଫଳରେ ଆକାଶରେ ମେଘ ଦେଖାଦେଇଛି । ସତୀଙ୍କ ପ୍ରତି ଏପରି ଅନ୍ୟାୟ କରାଯାଇଥିବାରୁ ପ୍ରକୃତି ସଂଗ୍ରାମ କରିବା ନିମିତ୍ତ ଆଗଭର ହୋଇ ବାହାରି ଆସିଛି । ପ୍ରବଳ ତୋଫାନରେ, ଘୂର୍ଣ୍ଣିବାୟୁରେ ବୃକ୍ଷଲତାଦି ଆନ୍ଦୋଳିତ ହେବାର ଦୃଶ୍ୟକୁ କବି ଯୁଦ୍ଧ ରୂପେ ବର୍ଣ୍ଣନା କରିଛନ୍ତି । କବି ଲେଖିଛନ୍ତି,

"କରିବାକୁ ନୃପତିର ସହିତ ସମର
ଦ୍ରୁମରାଜ ଖଡ୍‌ଗ କରେ ଗର୍ଜିଲା ପ୍ରଖର ।
ବାୟୁବଶ ତୂଣୀରକୁ ଝାଡ଼ି ବାରମ୍ବାର
ପତ୍ର-କଙ୍କପତ୍ର କଲା କି ଅବା ବାହାର ।
କମ୍ପିତ-ସରିତ-ବାରି ଉତ୍‌ଥିତ ଶୀକର
ପଡ଼ିଲା ପୁଲକେ ତେଜି ତରଙ୍ଗ-ଶିଖର ।
ଭରି କି ସୀସକ-ଗୁଳି ତରଙ୍ଗର ତୋପେ
ନୃପତିକି ଭାଗୀରଥୀ ପ୍ରହାରିଲା କୋପେ ?"

ଏହିପରି ଭାବରେ ଦେଖିଲେ ପ୍ରକୃତିକୁ ସକ୍ରିୟ ଅଂଶ ଦେବା ନିମିତ୍ତ ଗଙ୍ଗାଧର ପ୍ରକୃତିର ପ୍ରତ୍ୟେକ ପର୍ଯ୍ୟାୟକୁ ସଂଗ୍ରାମରତ ହେବା କଥା ବର୍ଣ୍ଣନା କରିଛନ୍ତି । କାବ୍ୟ ପ୍ରସଙ୍ଗରେ ସନ୍ଧ୍ୟା,

ପ୍ରଭାତ, ଉଷା, ମଧ୍ୟାହ୍ନ ପ୍ରଭୃତିର ପ୍ରାକୃତିକ ପରିବେଶ, ଋତୁ ଚକ୍ରର ଆବର୍ତ୍ତନ ପ୍ରଭୃତିକୁ କବି ଅତି ନିପୁଣତାର ସହିତ ବର୍ଣ୍ଣନା କରିଛନ୍ତି । ବାଲ୍ମୀକି ଆଶ୍ରମରେ ଶାନ୍ତିପୂର୍ଣ୍ଣ ବାତାବରଣ ଭିତରେ ସୀତାଙ୍କର ଉପସ୍ଥିତି ଯୋଗୁଁ ପ୍ରକୃତିର ଉଲ୍ଲାସକୁ ବର୍ଣ୍ଣନା କରିବାକୁ ଯାଇ କବି ଲେଖିଛନ୍ତି,

"ସ୍ଥଳ କମଳ ଆସନ ଦେଇ, ପ୍ରୀତି ସମ୍ଭାଷଣ
କଲି ସାରିକା ଭାଷଣ ଛଳେ ମଧୁରେ
ଶରଦ ସରସୀ ଜଳ ଫୁଟାଇ ନବ କମଳ
ଅଳିସ୍ୱନେ ଯଥା, କଳହଂସ-ବଧୂରେ
ବୋଇଲି, "ପାହିଲି ସଜନୀ
ତୋପଦ-ଅରୁଣେ ମୋର ଖେଦରଜନୀ ।"

ତପସ୍ୱିନୀର ପଞ୍ଚମ ସର୍ଗରେ ପ୍ରକୃତିର ପ୍ରକାଶ ଗଙ୍ଗାଧରଙ୍କ ଲେଖନୀରେ ପୁଷ୍କଳ ହୋଇଉଠିଛି । ଅଷ୍ଟମ ସର୍ଗରେ ସୀତାଙ୍କ ନିକଟରେ ଅଶୀତିର ସମ୍ପୃକ୍ତ ଅନୁସାରେ ଦର୍ଶନ କରିବାକୁ ପ୍ରକୃତିର ବିଭିନ୍ନ ବିଭାବଗୁଡ଼ିକ ଆସିଛନ୍ତି । ଶରତ୍କାଳ ସୀତାଙ୍କୁ ସମ୍ବୋଧନ କରି କହୁଛି,

"ତୁମ୍ଭ ଦର୍ଶନ-ଆଶା ରଖି ଅଟଳ
ଥରକୁ ଥର ଆସି ମେଘପଟଳ
ଲେଉଟନ୍ତି ଭ୍ରମି ଭ୍ରମି ଦଶଦିଗ
କାହିଁ ଅଛନ୍ତି ବୋଲି ସୀତାସୁନ୍ଦରୀ ।
ପୁଛନ୍ତି ମୋତେ ମନ୍ଦ୍ର-ଗମ୍ଭୀର-ସ୍ୱରେ
ମାନନ୍ତି ନାହିଁ କେବେ 'ନାହିଁ' ଉତ୍ତରେ,
ଖୋଜନ୍ତି ପୁଣି ଶମ୍ପା ଆଲୋକ ଧରି
କଷ୍ଟରୁ ଅଛି ବୋଲି ସୀତାସୁନ୍ଦରୀ ।".

ଏହିପରି ଭାବରେ ତପସ୍ୱିନୀ କାବ୍ୟର କଳେବର ଭିତରେ ପ୍ରକୃତିର ଆତ୍ମପ୍ରକାଶ ଅତ୍ୟନ୍ତ ସ୍ପଷ୍ଟ ଭାବରେ ପ୍ରତିଭାତ ହୁଏ । ଗଙ୍ଗାଧର ମେହେର ପ୍ରାଚୀନ-ପନ୍ଥାରେ ବିଶ୍ୱାସୀ ଥିଲେ ହେଁ ପ୍ରାଚୀନ କାବ୍ୟକାରମାନଙ୍କ ପରି ପ୍ରକୃତିକୁ କେବଳ ଆନୁସଙ୍ଗିକ ଭାବରେ ବର୍ଣ୍ଣନା କରି ନାହାନ୍ତି, ଆଧୁନିକତାର ପରିବେଶ ଭିତରେ ସାହିତ୍ୟ ସାଧନା କରିବାକୁ ଯାଇ ନବୀନ ଓ ପ୍ରାଚୀନର ସମନ୍ୱୟ ସମ୍ପାଦନ କରି ପ୍ରକୃତିକୁ ପ୍ରାଧାନ୍ୟ ଦେଇ ତାଙ୍କର କାବ୍ୟରାଜିକୁ ଯଥାର୍ଥ ରୂପ ଦାନ କରିପାରିଛନ୍ତି ।

କାବ୍ୟ ବ୍ୟତୀତ ତାଙ୍କର ଖଣ୍ଡକବିତା ଗୁଡ଼ିକରେ ପ୍ରକୃତିର ଆତ୍ମପ୍ରକାଶ ଯଥେଷ୍ଟ ଭାବରେ ପରିଲକ୍ଷିତ ହୋଇଥାଏ । କବିତା କଲ୍ଲୋଳରେ ବେଦବ୍ୟାସ ଓ ଚନ୍ଦ୍ର ରଜନୀ କବିତାରେ ପ୍ରକୃତିର ବର୍ଣ୍ଣନା ଯଥେଷ୍ଟ ଭାବରେ ଅଛି । ଏହି ସବୁ ବର୍ଣ୍ଣନା ପାଠ କଲା-ବେଳେ ମନେ ହୁଏ, ଗଙ୍ଗାଧରଙ୍କର ପ୍ରକୃତି ପର୍ଯ୍ୟବେକ୍ଷଣ ଶକ୍ତି ଯାହା ଥାଉ ନା କାହିଁକି ରାଧାନାଥଙ୍କ ପ୍ରଭାବରେ ସେ ଶକ୍ତି ଶାଣିତ ହୋଇଅଛି । ରାଧାନାଥଙ୍କ ସାହିତ୍ୟରେ ଉତ୍କଳର ପ୍ରକୃତି ଆତ୍ମ-ପ୍ରକାଶ କରି ନ ଥିଲେ ବା ରାଧାନାଥଙ୍କ ସଂପର୍କରେ ଗଙ୍ଗାଧର ମେହେର ଆସି ନ ଥିଲେ, ତାଙ୍କ କାବ୍ୟ କବିତାରେ ପ୍ରକୃତି କି ରୂପ ପରିଗ୍ରହ କରିଥାଆନ୍ତା, ସେ କଥା କହିହେବ ନାହିଁ ।

## (୫) ଗଙ୍ଗାଧର ମେହେରଙ୍କର ଆଦର୍ଶବାଦ

କବି ଗଙ୍ଗାଧର ମେହେର ତାଙ୍କର ସାହିତ୍ୟ ସୃଷ୍ଟି ଭିତରେ ଖଣ୍ଡକବିତାରେ ଅନେକ ସ୍ଥାନରେ ସମସାମୟିକ ଚିନ୍ତ ପ୍ରଦାନ କରିଅଛନ୍ତି । ଏହି ସମସାମୟିକ ଚିନ୍ତ ଭିତରେ ଗଙ୍ଗାଧର ମିଥ୍ୟା ଓ ଅନ୍ୟାୟର ନିନ୍ଦା କରି ସତ୍ୟ ଓ ନ୍ୟାୟର ପ୍ରତିଷ୍ଠା ନିମନ୍ତେ

ମତ ବ୍ୟକ୍ତ କରିଛନ୍ତି । ତାଙ୍କର କାବ୍ୟ ସମୂହରେ ଏହି ଭାବ ଅନେକବାର ପରିଲକ୍ଷିତ ହୁଏ । ଗଙ୍ଗାଧର ମେହେରଙ୍କର ଜୀବନର ଆଦର୍ଶ ଜାଣିବାକୁ ହେଲେ ତାଙ୍କ ନିଜର ଉକ୍ତିକୁ ଅନୁଧ୍ୟାନ କରିବାକୁ ହୁଏ । ତପସ୍ୱିନୀ କାବ୍ୟର ଆରମ୍ଭରେ ସେ ଲେଖିଛନ୍ତି,

"ଦରିଦ୍ରତା ପଙ୍କପୂର୍ଣ୍ଣ ମୋ ଜୀବନ-ସର
ଜଞ୍ଜାଳ-ଜଳଦ-ଜଳେ ଆବିଳ ଉଦର
ଶରଦ ସଦୃଶ ତୋତେ କରି ଦରଶନ
ହୋଇ ଯାଉଅଛି ସେତ ସ୍ୱତଃ ପରସନ୍ନ ।"

ଏହି ଉକ୍ତିରୁ ତାଙ୍କ ଜୀବନରେ ସାହିତ୍ୟ ସାଧନାର ମହତ୍ତ୍ୱ ଉପଲବ୍ଧି କରିହୁଏ । ସଂସ୍କୃତ ସାହିତ୍ୟ ଅଧ୍ୟୟନ କରି ତହିଁରୁ ସାରକଥା ବାଛି ତାକୁ କାବ୍ୟରେ ରୂପାନ୍ତର କରିବାର ପ୍ରୟାସରେ ସେ ଗତାନୁଗତିକତା ଏଡ଼ି ଦେଇଛନ୍ତି । ତାଙ୍କ ରସ-ରତ୍ନାକର ଗତାନୁଗତିକ ରୀତିରେ ରଚିତ ହେଲେ ହେଁ ଏହା ଯେ ରାଧାନାଥଙ୍କ ଉଷା କାବ୍ୟର ଏକ ମୌନ ପ୍ରତିବାଦ, ଏ କଥା ପୂର୍ବରୁ କୁହାଯାଇଛି । କୀଚକବଧ ଏବଂ ଚନ୍ଦ୍ରମା କାବ୍ୟରେ ଧର୍ମ ଏବଂ ଅଧର୍ମର ଦ୍ୱନ୍ଦ୍ୱ ଭିତରେ ପୁଣ୍ୟ ଏବଂ ପାପର ପରିଣାମ ସ୍ପଷ୍ଟ ଭାବରେ ପ୍ରକାଶ ପାଇଛି । ପରନାରୀ ପ୍ରତି ଆସକ୍ତ ହୋଇ କୀଚକ ଏବଂ ଆହ୍ଲାଦିନ ସମଦଶା ଭୋଗ କରିଛନ୍ତି । ନାରୀକୁ ସମ୍ମାନ ଦେବା ନିମିତ୍ତ କବିଙ୍କର ଉଦ୍ଦେଶ୍ୟ ସ୍ପଷ୍ଟତର । ଇନ୍ଦୁମତୀ ଓ ଉତ୍କଳଲକ୍ଷ୍ମୀ କାବ୍ୟର ଆଦର୍ଶରେ ଭିନ୍ନତା ଦେଖାଯାଏ । ଇନ୍ଦୁମତୀ କାବ୍ୟରେ ଏହି ଭାରତୀୟ ନାରୀର ମହିମାମୟତା ପ୍ରକାଶ ପାଇଛି । ଉତ୍କଳ-ଲକ୍ଷ୍ମୀରେ କବିଙ୍କ ନିଜର ଜନ୍ମଭୂମି ପ୍ରତି ଥିବା ପ୍ରଗାଢ଼ ମମତା ସ୍ପଷ୍ଟ ଭାବରେ ପ୍ରକାଶ ପାଇଛି । ଗୁଣୀର ଗୁଣକୁ ପ୍ରଶଂସା କରିବାକୁ ଯାଇ ଏହି ଉତ୍କଳଲକ୍ଷ୍ମୀରେ

ଗଙ୍ଗାଧର ରାଧାନାଥଙ୍କ ପ୍ରଶଂସାରେ ଶତମୁଖ ହୋଇ ଉଠିଛନ୍ତି । ତପସ୍ୱିନୀ କାବ୍ୟରେ କବିଙ୍କର ଆଦର୍ଶବାଦ ବିଶେଷ ଭାବେ ପ୍ରକାଶ ପାଇଛି । କବି ଆଦର୍ଶ ଚରିତ୍ର ହିସାବରେ ରାମଚନ୍ଦ୍ର ଏବଂ ସୀତାଙ୍କୁ ଚିତ୍ରଣ କରିଛନ୍ତି । ପିତୃସତ୍ୟ ପାଳନ କରି ରାମଚନ୍ଦ୍ରଙ୍କର ଚରିତ୍ରର ଯେତିକି ମହନୀୟତା ପ୍ରକାଶ ପାଇଥିଲା, ପତିଙ୍କ ଆଦେଶ ପାଳନ କରି ସୀତାଙ୍କର ତପସ୍ୱିନୀ-ଜୀବନ ଯାପନରେ ସୀତା ଚରିତ୍ରର ମହନୀୟତା ସେହିପରି ପ୍ରକାଶ ପାଇଛି । ସୀତାଙ୍କୁ ରାମଚନ୍ଦ୍ର ନିର୍ବାସନ ଦଣ୍ଡ ଦେଲେହେଁ ସୀତା ଯେଉଁପରି ଭାବରେ ନିଜର ଦୋଷ ଦେଖିଛନ୍ତି, ସେହି ଆଦର୍ଶ ଭାରତୀୟ ନାରୀର ଆଦର୍ଶ । ଭାରତୀୟ ନାରୀ ଆତ୍ମସର୍ବସ୍ୱା ନୁହେଁ । ପତିଙ୍କୁ କେନ୍ଦ୍ର କରି ପାରିବାରିକ ଜୀବନ ଭିତରେ ଭାରତୀୟ ନାରୀଜୀବନର ମହତ୍ତ୍ୱ ବିଶ୍ୱବିଖ୍ୟାତ । ଆଦର୍ଶ ଶାସକ ହିସାବରେ ରାମଚନ୍ଦ୍ରଙ୍କର ଚରିତ୍ର ଭିତରେ ଗଙ୍ଗାଧର ମେହେର ଯେଉଁ ଗୁଣଗୁଡ଼ିକୁ ଭରି ଦେଇଛନ୍ତି, ସେଗୁଡ଼ିକ ଗଙ୍ଗାଧରଙ୍କର ସମସାମୟିକ ଶାସକ-ଗୋଷ୍ଠୀଙ୍କ ପ୍ରତି ଶିକ୍ଷା କରିବା ନିମିତ୍ତ ଏକ ଆଦର୍ଶର ପଥ । ପ୍ରଣୟ-ବଲ୍ଲରୀରେ ଦୁଷ୍ମନ୍ତ ଆଦର୍ଶ ନରପତି ରୂପେ ଚିତ୍ରିତ ହୋଇଥିଲେ ହେଁ ପୁରୀରେ ଅତିମାନବିକତା ଭିତରେ ଦୁଷ୍ମନ୍ତଙ୍କର ମହତ୍ତ୍ୱ ଲୁପ୍ତ । ଶକୁନ୍ତଳା ସେହିପରି ପ୍ରଣୟିନୀ ହିସାବରେ ନିଜର ମହତ୍ତ୍ୱ ଦେଖାଇ-ଛନ୍ତି । ସୁନାକୁ ନିଆଁରେ ପୋଡ଼ିଲେ ତାହା ଯେଭଳି ଅଧିକ ଉଜ୍ଜ୍ୱଳ ହୁଏ, ସେହିପରି ଦୁର୍ବାସାଙ୍କ ଅଭିଶାପ ଫଳରେ ଶକୁନ୍ତଳାଙ୍କର ପ୍ରେମ ଉଦ୍ଭାସିତ ହୋଇଅଛି ।

ଗଙ୍ଗାଧର ମେହେର ତାଙ୍କ ରଚନା ଭିତରେ ଅନେକ ସ୍ଥଳରେ ଜଣେ ଉପଦେଷ୍ଟାର ଆସନ ନେଇଛନ୍ତି । ଶକୁନ୍ତଳା ସ୍ୱାମୀ-ଗୃହକୁ ଯିବା ସମୟରେ ସ୍ୱାମୀ ଗୃହରେ କିପରି ସମୟ କଟାଇବାକୁ ହୁଏ, ସେ ବିଷୟରେ ଏକ ଧର୍ମ ଉପଦେଶ କଣ୍ୱଙ୍କ ମୁଖରେ କବି

ଦେଇଛନ୍ତି । ଗୁରୁଜନମାନଙ୍କୁ କପରି ଭକ୍ତି କରିବାକୁ ହୁଏ, ଲଘୁଜନ-ମାନଙ୍କୁ କପରି ସ୍ନେହପ୍ରୀତି ଭିତରେ ବାନ୍ଧି ରଖିବାକୁ ହୁଏ, ପତିଙ୍କୁ କପରି ଭକ୍ତି ଓ ସ୍ନେହର ମିଶ୍ରଣରେ ସେବା କରିବାକୁ ହୁଏ, ଏ ସବୁକୁ ଅତି ପ୍ରାଞ୍ଜଳ ଭାବରେ ବର୍ଣ୍ଣନା କରାଯାଇଅଛି ।

ଦେଶରେ ଯେତେବେଳେ ବିଦେଶୀ ଶାସନର ପ୍ରଭାବରେ ଶିକ୍ଷା, ଭାଷା, ଧର୍ମ, ପରମ୍ପରା ବ୍ୟାହତ ହେବାକୁ ଲାଗିଲା, ସେତେବେଳେ ଗଙ୍ଗାଧର ଆଧୁନିକତାର ଚାକଚକ୍ୟଦେଖାଣିଆ ରୁଚିରେ ଭାସି ନ ଯାଇ ଭାରତୀୟ ଶିକ୍ଷା, ଭାଷା ଓ ଧର୍ମର ଦାୟାଦରୂପେ ଦେଶ-ବାସୀଙ୍କୁ ତାଙ୍କର ଲେଖନୀ ସାହାଯ୍ୟରେ ପଥ ନ ଭୁଲିବାର ସଙ୍କେତ ଦେଇଥିଲେ । "ଓଡ଼ିଆ ଏକ ସ୍ୱତନ୍ତ୍ର ଭାଷା ନୁହେଁ" ବୋଲି ଯେଉଁ ଆନ୍ଦୋଳନ ହୋଇଥିଲା, ସେ ଆନ୍ଦୋଳନ ମଧ୍ୟ ଗଙ୍ଗାଧରଙ୍କ ମନରେ କମ୍ ପ୍ରତିକ୍ରିୟା ସୃଷ୍ଟି କରିନାହିଁ । ସେତେବେଳେ ଆକ୍ଷେପ କରା ଯାଇଥିଲା ଯେ, ଓଡ଼ିଆରେ ଉନ୍ନତ ସାହିତ୍ୟ-ସୃଷ୍ଟି ନାହିଁ । ସଙ୍କୀର୍ଣ୍ଣ ପ୍ରାଦେଶିକତା ଯୋଗୁଁ ଏ ପ୍ରକାର ମନୋବୃତ୍ତିରେ ଗଙ୍ଗାଧର ବ୍ୟଥିତ ହୋଇଥିଲେ । ସଙ୍କୀର୍ଣ୍ଣ ପ୍ରାଦେଶିକତା ଭିତରେ ନିଜକୁ ଆବଦ୍ଧ ନ ରଖି ମହାଭାରତୀୟତା ଆଡ଼କୁ ସେ ଅଗ୍ରସର ହୋଇଥିଲେ । ତେଣୁ ହୁଏତ ସେ ଭାବିଥିଲେ ରାଧାନାଥ, ଫକୀର ମୋହନ ପ୍ରମୁଖ ସାହିତ୍ୟିକମାନଙ୍କର ସାହିତ୍ୟ-ସୃଷ୍ଟି ଏ ଦେଶର ଗଣଜୀବନକୁ ପ୍ରଭାବିତ କରି ନ ପାରେ । ମାତ୍ର ରାମାୟଣ ମହାଭାରତଠାରୁ ଆରମ୍ଭ କରି କାଳିଦାସ ଭବଭୂତି ପର୍ଯ୍ୟନ୍ତ ସ୍ରଷ୍ଟାମାନଙ୍କର ସୃଷ୍ଟି ଭିତରେ ଯାହା ଅଛି, ତାହାର ପ୍ରଭାବକୁ କେହି ଅସ୍ୱୀକାର କରିପାରିବେ ନାହିଁ । ସୁତରାଂ ନିଜ କଳ୍ପନା ବଳରେ ଦେଶର ପାଠକ ସମାଜ ଉପରେ ପ୍ରଭାବ ପକାଇବାକୁ ଉଚିତ ମନେ ନ କରି ସେ ଭାରତର ପ୍ରାଚୀନ ସାହିତ୍ୟମାନଙ୍କରୁ ସାରବସ୍ତୁ ଆହରଣ କରି ସାହିତ୍ୟ ସାଧନା

କରିଅଛନ୍ତି । ଆହରଣ ସତ୍ତ୍ୱେ ଗଙ୍ଗାଧର ମେହେରଙ୍କର ସାହିତ୍ୟରେ ଯେଉଁ ସ୍ୱାତନ୍ତ୍ର୍ୟ ପରିଲକ୍ଷିତ ହୁଏ, ତାହା ଯୁଗ ପ୍ରଭାବର ଫଳ । ଆଦର୍ଶବାଦୀ କବି ହିସାବରେ ଗଙ୍ଗାଧର ମେହେରଙ୍କର ସ୍ଥାନ ଓଡ଼ିଆ ସାହିତ୍ୟରେ ସ୍ୱୀକାର କରିବାର କଥା ।

## (୭) ଓଡ଼ିଆ ସାହିତ୍ୟରେ ଗଙ୍ଗାଧରଙ୍କ ସ୍ଥାନ

ଓଡ଼ିଆ ସାହିତ୍ୟରେ ଗଙ୍ଗାଧରଙ୍କ ଆବିର୍ଭାବ କାଳ ଇତିହାସ ଦୃଷ୍ଟିରୁ ଗୁରୁତ୍ୱପୂର୍ଣ୍ଣ । ଆଧୁନିକ ଓଡ଼ିଆ ସାହିତ୍ୟରେ ଯୁଗସ୍ରଷ୍ଟା ରାଧାନାଥ ଯେତେବେଳେ ଅପ୍ରତିଦ୍ୱନ୍ଦ୍ୱୀ କବି ଗୌରବରେ ଭୂଷିତ, ସେତିକବେଳେ ଗଙ୍ଗାଧର ସାହିତ୍ୟ ସାଧନାରେ ମଧ୍ୟ ଲିପ୍ତ । ସାହିତ୍ୟ-ସାଧନା ନିମିତ୍ତ ରାଧାନାଥ ଗଙ୍ଗାଧରଙ୍କୁ ବହୁ ଉପଦେଶ ଦେଇଛନ୍ତି ଏବଂ ତାଙ୍କଠାରୁ ଓଡ଼ିଆ ସାହିତ୍ୟ ଯେ ଅନେକ କିଛି ପାଇବାର କଥା ସେ କଥା, ମଧ୍ୟ କହିଛନ୍ତି । ରାଧାନାଥ ଏବଂ ଗଙ୍ଗାଧର ଦୁହେଁ ଦୁଇଟି ଭିନ୍ନ ମାର୍ଗର ପଥିକ ହେଲେ ହେଁ ଗଙ୍ଗାଧରଙ୍କ ସୃଷ୍ଟି ଭିତରେ ରାଧାନାଥ ପାଇଥିଲେ ଏକ ବିରାଟ ପ୍ରତିଭାର ସଙ୍କେତ । ରାଧାନାଥ ପାଶ୍ଚାତ୍ୟ ଚିନ୍ତାଧାରାର ସମନ୍ୱୟ କଲାବେଳେ ଗଙ୍ଗାଧର ପ୍ରାଚ୍ୟ ଚିନ୍ତାଧାରାର ସମନ୍ୱୟ କରିଛନ୍ତି । ତେଣୁ ରାଧାନାଥଙ୍କୁ ଜାତୀୟତାର ଅପଳାପ କରିବା ଦୋଷରେ ଦୋଷୀ କରିବାବେଳେ ଗଙ୍ଗାଧରଙ୍କୁ ଜାତୀୟବାଦୀ କବି ରୂପେ ଏ ଦେଶରେ ପାଠକବର୍ଗ ଗ୍ରହଣ କରି ନେଇଛନ୍ତି । ଗଙ୍ଗାଧର ସାହିତ୍ୟ ଆମ ଜୀବନରେ ଅତି ପରିଚିତ ଓ ଘନିଷ୍ଠ ଭାବରେ ସଂପୃକ୍ତ । ମାତ୍ର ରାଧାନାଥଙ୍କ ସାହିତ୍ୟ ସହିତ ଆମ ଜାତୀୟ ଜୀବନର ସଂପୃକ୍ତି ଆଦୌ ନ ଥିଲା କହିଲେ ଚଳେ । ରାଧାନାଥଙ୍କର ଶିକ୍ଷା, ସୁବିଧା, ସୁଯୋଗ ଯାହା ଥିଲା, ଗଙ୍ଗାଧରଙ୍କର ତାହା ଆଦୌ ନ ଥିଲା ।

ପ୍ରତିକୂଳ ପରିସ୍ଥିତିରେ ଗଙ୍ଗାଧରଙ୍କୁ ସାହିତ୍ୟ-ସାଧନା କରିବାକୁ ପଡ଼ିଛି । ସ୍ୱଳ୍ପଶିକ୍ଷିତ ହେଲେହେଁ ଗଙ୍ଗାଧର ଉନ୍ନତ ଆଦର୍ଶର ବଶବର୍ତ୍ତୀ ହୋଇ ଓଡ଼ିଆ ସାହିତ୍ୟକୁ ଯେଉଁ ଦାନ କରିଛନ୍ତି, ତାହା ଚିନ୍ତା କଲେ ବିସ୍ମିତ ହେବାକୁ ପଡ଼େ । ତାଙ୍କ କାବ୍ୟର ଆଦର୍ଶ, ଖଣ୍ଡ-କବିତାର ଆଦର୍ଶ ଏବେ ମଧ୍ୟ ଓଡ଼ିଆ କବିମାନଙ୍କ ଉପରେ ପ୍ରଭାବ ପକାଉଛି । ବାସ୍ତବ ଜୀବନର ଗୁମ୍ଫା ପ୍ରକାଶ କରିବାକୁ ସାହିତ୍ୟ ଯେତେଦୂର ସମର୍ଥ ହେଲେ ହେଁ ସାହିତ୍ୟ ଭିତରେ ଆଦର୍ଶବାଦର ପ୍ରକୃତିକୁ ସ୍ୱୀକାର କରିବାର କଥା । ଏହି ଦୃଷ୍ଟିରୁ ଗଙ୍ଗାଧର ଓଡ଼ିଆ ପାଠକ ନିକଟରେ ପୂଜ୍ୟ ।

ତାଙ୍କର କାବ୍ୟରେ ପ୍ରେମ, ବିରହ, ମିଳନର ବର୍ଣ୍ଣନା ଭିତରେ ତାଙ୍କର ସ୍ୱାତନ୍ତ୍ର୍ୟ ଲକ୍ଷ୍ୟ କରିବାର କଥା । ଚରିତ୍ର ଚିତ୍ରଣରେ ତାଙ୍କର ପାରଦର୍ଶିତା ସ୍ୱୀକାର୍ଯ୍ୟ । ଭାଷା ପ୍ରୟୋଗରେ ଅନେକତ୍ର ସାମ୍ୟ ରକ୍ଷିତ ହୋଇ ନ ଥିଲେ ହେଁ ମେହେରଙ୍କ ଭାଷାର ଶୈଳୀ ଏକ ସ୍ୱତନ୍ତ୍ର ଶ୍ରେଣୀର । କଥାବସ୍ତୁ ଗ୍ରହଣରେ ଅନେକତ୍ର ମୂଳ କଥାବସ୍ତୁକୁ ପରିବର୍ତ୍ତନ କରିବାର ପ୍ରୟାସ ଭିତରେ ତାଙ୍କର ଚିନ୍ତାଧାରାର ବୈଶିଷ୍ଟ୍ୟ ପରିଲକ୍ଷିତ ହୁଏ । ଛନ୍ଦ ପ୍ରୟୋଗରେ ସେ ପ୍ରାଚୀନ ଏବଂ ନବୀନର ସମନ୍ୱୟ ସ୍ଥାପନ କରିଅଛନ୍ତି ।

ଆଧୁନିକ ଓଡ଼ିଆ ସାହିତ୍ୟରେ ପ୍ରକୃତି ଯେତେବେଳେ ଏକ ସ୍ୱତନ୍ତ୍ର ସ୍ଥାନ ଅଧିକାର କଲା, ସେତେବେଳେ କବିବର ରାଧାନାଥ ଏହି ଦୃଷ୍ଟିରୁ ଏକ ଆଦର୍ଶର ପଥ ଉନ୍ମୋଚନ କଲେ । ଗଙ୍ଗାଧର ମେହେର ପ୍ରକୃତିକୁ ନିଜର କାବ୍ୟ କବିତା ଭିତରେ ଯେପରି ରୂପଦାନ କରିଛନ୍ତି, ତାହା ଦେଖିବାର କଥା । ରାଧାନାଥଙ୍କ ଦ୍ୱାରା ପ୍ରଭାବିତ ହେଲେ ହେଁ ତାଙ୍କର ପ୍ରକୃତି-ଚିତ୍ରଣରେ ପାରଦର୍ଶିତା


Digitized by srujanika@gmail.com

ଯୋଗୁଁ ଅନେକ ସମାଲୋଚକ ଇଂରେଜ କବି **Wordsworth**ଙ୍କ ସହିତ ତାଙ୍କୁ ତୁଳନା କରନ୍ତି । **Wordsworth** ଙ୍କର ପ୍ରକୃତି ପର୍ଯ୍ୟବେକ୍ଷଣ ଏବଂ ଗଙ୍ଗାଧରଙ୍କର ପ୍ରକୃତି ପର୍ଯ୍ୟବେକ୍ଷଣ ଭିତରେ ପାର୍ଥକ୍ୟ ଯଥେଷ୍ଟ ଅଛି । ଇଂରେଜୀ ସାହିତ୍ୟରେ ପ୍ରକୃତି ଯେଉଁ ବର୍ଣ୍ଣବୈଭବ ନେଇ ଚିହ୍ନିତ, ପ୍ରାଚ୍ୟ ସାହିତ୍ୟରେ ପ୍ରକୃତି ସେ ବର୍ଣ୍ଣବୈଭବରେ ମଣ୍ଡିତ ନୁହେଁ । ପ୍ରାଚ୍ୟର ସୌନ୍ଦର୍ଯ୍ୟରେ ବର୍ଣ୍ଣ-ସମ୍ଭାର ପୃଥକ୍ । ପ୍ରକୃତି ମନୁଷ୍ୟର ସୁଖଦୁଃଖରେ ଭାଗ ନେବା ଏବଂ ନିଜେ ଆତ୍ମପ୍ରକାଶ କରି କାର୍ଯ୍ୟ ସମ୍ପାଦନ କରିବାର ଚିହ୍ନ ଆଧୁନିକ ଓଡ଼ିଆ ସାହିତ୍ୟରେ ପ୍ରଥମ ଥର ପାଇଁ ଦେଖା ଦେଇ-ଥିଲେ ହେଁ ତାହା ଇଂରେଜୀ ଶିକ୍ଷା ସଭ୍ୟତାର ଭାବର ଫଳ ରୂପେ ସ୍ୱୀକୃତ । ଗଙ୍ଗାଧର ମେହେର ଯୁଗର ପ୍ରଭାବରେ ଏହି କୌଶଳଟିକୁ ଉତ୍ତମରୂପେ ଧରିପାରିଥିଲେ ଓ ପ୍ରକୃତିକୁ ଯଥାଯଥ ରୂପରେ ପ୍ରକାଶ କରିଥିଲେ ।

ଅନେକ ସମାଲୋଚକ କହନ୍ତି ଯେ, ଗଙ୍ଗାଧର ମେହେର ଇଂରେଜୀ ଶିକ୍ଷା ପାଇ ନ ଥିବା ସୌଭାଗ୍ୟର କଥା । ଇଂରେଜୀ ଶିକ୍ଷା ପାଇଥିଲେ ତାଙ୍କର ଦୃଷ୍ଟିପଥ "ପ୍ରାଚ୍ୟ"ରେ ନ ରହି "ପାଶ୍ଚାତ୍ୟ" ଆଡ଼କୁ ଅଗ୍ରସର ହୋଇଥାନ୍ତା । କିନ୍ତୁ ପ୍ରକୃତ ପକ୍ଷରେ ଏ ପ୍ରକାର ମତାମତର କିଛି କାରଣ ନାହିଁ । ଗଙ୍ଗାଧର ମେହେର ପାଶ୍ଚାତ୍ୟ ଶିକ୍ଷା ପାଇ ନ ଥିଲେ ହେଁ ପାଶ୍ଚାତ୍ୟ ଶିକ୍ଷାରେ ପଣ୍ଡିତ ରାଧାନାଥଙ୍କ ସାହିତ୍ୟ ସୃଷ୍ଟି ଦ୍ୱାରା ଏବଂ ବ୍ୟକ୍ତିଗତ ଭାବରେ ସେ ପ୍ରଭାବିତ । ଓଡ଼ିଆ ସାହିତ୍ୟରେ ପ୍ରକୃତିର ନବୀନ ରୂପାୟନ ନିମିତ୍ତ ସେ ରାଧାନାଥଙ୍କ ଦ୍ୱାରା ପ୍ରଭାବିତ । ତେଣୁ ପାଶ୍ଚାତ୍ୟ ଶିକ୍ଷା ପାଇଥିଲେ ଯେ ଗୁଡ଼ାଏ ପାଶ୍ଚାତ୍ୟ କଥା ବା କାହାଣୀକୁ ଆଣି ଓଡ଼ିଆ ସାହିତ୍ୟରେ ଥୋଇ ଯାଇଥାନ୍ତେ, ଏପରି ଅନୁମାନ ଠିକ

ହୋଇ ନ ପାରେ । ଆମକୁ ସ୍ୱୀକାର କରିବାକୁ ପଡ଼ିବ ଯେ, ଗଙ୍ଗାଧର ଇଂରେଜୀ ଶିକ୍ଷା ପାଇ ନ ଥିଲେ ହେଁ ଇଂରେଜୀ ଶିକ୍ଷିତ ବ୍ୟକ୍ତିଙ୍କ ଦ୍ୱାରା ପ୍ରଭାବିତ ।

ଗଙ୍ଗାଧରଙ୍କ ସାହିତ୍ୟ ସୃଷ୍ଟିର ଚିରନ୍ତନ ମୂଲ୍ୟ ସ୍ୱୀକାର୍ଯ୍ୟ । ତାଙ୍କର କଥାବସ୍ତୁ ଗ୍ରହଣରେ ମୌଳିକତା ଯୋଗୁଁ ଇନ୍ଦୁମତୀ, ପ୍ରଣୟବଲ୍ଲରୀ, କୀଚକବଧ, ତପସ୍ୱିନୀ ପ୍ରମୁଖ କାବ୍ୟ ଗୁଡ଼ିକ ଯେ କୌଣସି ସମୟରେ ପାଠକ ସମାଜ ଦ୍ୱାରା ଆଦୃତ ହେବ, ଏଥିରେ ସନ୍ଦେହ ନାହିଁ । ଯୁଗ ପ୍ରଭାବରେ ଏଗୁଡ଼ିକର ମୂଲ୍ୟ ହ୍ରାସ ହେବାର ଆଶଙ୍କା ନାହିଁ । ଭାରତୀୟ ଜାତିର ଅସ୍ତିତ୍ୱ ଥିବାପର୍ଯ୍ୟନ୍ତ ଶକୁନ୍ତଳା ଦୁଷ୍ମନ୍ତ, ଅଜ, ଇନ୍ଦୁମତୀ ଓ ରାମଚନ୍ଦ୍ର ସୀତା ଯେପରି ଅବିସ୍ମରଣୀୟ ହୋଇ ରହିବେ, ଠିକ୍ ସେହିପରି ଗଙ୍ଗାଧର ମେହେରଙ୍କର ପ୍ରଣୟ-ବଲ୍ଲରୀ, ଇନ୍ଦୁମତୀ ଓ ତପସ୍ୱିନୀ ପ୍ରଭୃତି କାବ୍ୟରାଜି ଓଡ଼ିଆ ସାହିତ୍ୟରେ ଅବିସ୍ମରଣୀୟ ହୋଇ ରହିବ ।



# ପଲ୍ଲୀକବି ନନ୍ଦକିଶୋର

ଓଡ଼ିଆ ସାହିତ୍ୟରେ ଆଧୁନିକ ଯୁଗର ସ୍ରଷ୍ଟା କବିବର ରାଧାନାଥଙ୍କର କାବ୍ୟସମୂହ ସେ ସମୟରେ ଓଡ଼ିଆ ପାଠକମାନଙ୍କ ମନରେ ଏକ ବିରୋଧୀ ଭାବ ଜାତ କରାଇ ଥିଲେହେଁ ତାର ପ୍ରତ୍ୟକ୍ଷ ପ୍ରତିବାଦ କାବ୍ୟ ଜରିଆରେ କରିବାକୁ କେହି ପ୍ରୟାସ କରି ନାହାନ୍ତି । କବିବର ଗଙ୍ଗାଧର ତାଙ୍କର ପ୍ରାଥମିକ ଅବସ୍ଥାରେ ରସ-ରତ୍ନାକର ଲେଖି ରାଧାନାଥଙ୍କର ଊଷା କାବ୍ୟର ଏକ ମୌନ ପ୍ରତିବାଦ କରିଥିବା କଥା ଆଗରୁ କୁହାଯାଇଛି । ଗଙ୍ଗାଧର ମେହେରଙ୍କ କାବ୍ୟ କବିତା ସୃଷ୍ଟିରେ ମୁଗ୍ଧ ହୋଇ ତାଙ୍କର ଜାତୀୟତା ଯୋଗୁଁ ଅଧିକାଂଶ ସମୟରେ ତାଙ୍କୁ ଧନ୍ୟବାଦ ଜଣାଉଥିଲେ ପଲ୍ଲୀକବି ନନ୍ଦକିଶୋର । ନନ୍ଦକିଶୋର ଓଡ଼ିଆ ସାହିତ୍ୟରେ ଲଘୁ କବିତାର ସ୍ରଷ୍ଟା ରୂପେ ସମ୍ମାନର ଯୋଗ୍ୟ । କବି କେବଳ ଯେ ଏ ଲଘୁ କବିତା ଲେଖିଛନ୍ତି ତା ନୁହେଁ, କାବ୍ୟ, ଉପନ୍ୟାସ, ପ୍ରବନ୍ଧ ପ୍ରଭୃତି ମଧ୍ୟ ଲେଖିଛନ୍ତି । କାବ୍ୟ, କବିତା, ପ୍ରବନ୍ଧ ପ୍ରଭୃତି ଲେଖି ମଧ୍ୟ ଫକୀରମୋହନ ଯେପରି ଶ୍ରେଷ୍ଠ ଔପନ୍ୟାସିକ ଓ ଗାଳ୍ପିକ ହିସାବରେ ନିଜର ପରିଚୟ ଦେଇଗଲେ, ଠିକ୍ ସେହିପରି କାବ୍ୟ, ଉପନ୍ୟାସ, ପ୍ରବନ୍ଧ ଲେଖି ମଧ୍ୟ ନନ୍ଦକିଶୋର ନିଜକୁ କେବଳ ପଲ୍ଲୀକବି ରୂପେ ପରିଚିତ କରି ଯାଇଛନ୍ତି ।

ପ୍ରାକୃତିକ ଶୋଭା-ସମ୍ପଦରେ ପରିପୂର୍ଣ୍ଣ କୁଶପୁର ଗ୍ରାମର ଛବିଳ ବେଷ୍ଟନୀ ଭିତରେ କବି ତାଙ୍କର ବାଲ୍ୟଜୀବନରେ ପ୍ରକୃତି ସହିତ ନିବିଡ଼ ଭାବରେ ପରିଚିତ ହେବାର ସୁଯୋଗ ପାଇଥିଲେ । ତାଙ୍କର ପରବର୍ତ୍ତୀ ଜୀବନରେ କର୍ତ୍ତବ୍ୟ ଅନୁରୋଧରେ ଯେତେ ସ୍ଥାନ

ସେ ଭ୍ରମଣ କରିଛନ୍ତି, ସବୁ ସ୍ଥାନରେ ବାଲିର ପ୍ରକୃତ ପ୍ରିୟତା ତାଙ୍କୁ ପ୍ରକୃତ ପର୍ଯ୍ୟବେକ୍ଷଣରେ ଅନୁପ୍ରାଣିତ କରିଅଛି । ବାଲିର ସ୍ମୃତିଭରା ଜନ୍ମମାଟିକୁ ଛାଡ଼ି ସହରର ମାଟିରେ କବି ପାଦ ଦେଇଥିଲେ ହେଁ ସହରର ଶୃଙ୍ଖଳୀ ପ୍ରତି ତାଙ୍କର ମନ ଆକୃଷ୍ଟ ହୋଇନାହିଁ । ତେଣୁ ମୁଖ୍ୟତଃ ତାଙ୍କର କବିତା ପଲ୍ଲୀର ସରଳ ନିରାଡ଼ମ୍ବର କାନ୍ତ କୋମଳ ମଧୁର ପ୍ରକୃତିକୁ ଅନୁସରଣ କରି ଗତିମୁଖର ହୋଇଉଠିଛି ।

**ନନ୍ଦକିଶୋରଙ୍କ କବିତା**—ନନ୍ଦକିଶୋରଙ୍କ କବି ଜୀବନରେ ବାସ୍ତବ ସୃଷ୍ଟି ତାଙ୍କର ନବ ବିବାହିତ ଜୀବନରେ ସମ୍ଭବ ହୋଇପାରିଛି । ସେ ବାଲିର ଜନ୍ମମାଟିର ସ୍ମୃତିକୁ ପ୍ରତ୍ୟକ୍ଷ ଭାବରେ ତାଙ୍କର କବିତାରେ ବାରମ୍ବାର ରୂପଦାନ କରିଅଛନ୍ତି । ବାରବର୍ଷ ବୟସ୍କ ନନ୍ଦକିଶୋରଙ୍କର ପଲ୍ଲୀ ପାଠଶାଳାର ଅନୁଭୂତି; 'ପଲ୍ଲୀଚିତ୍ର' କବିତାରେ ସ୍ପଷ୍ଟଭାବରେ ପ୍ରକାଶ ପାଇଛି । ଏହି ପଲ୍ଲୀଚିତ୍ର ତିନିଭାଗରେ ବିଭକ୍ତ । ପ୍ରଥମ ଭାଗରେ ଆଠ ଗୋଟି ଦୃଶ୍ୟ ଅଛି । ଏ ଗୁଡ଼ିକ ଯଥାକ୍ରମେ ପଲ୍ଲୀବାସୀ, ଗ୍ରାମଖଳା, ଗ୍ରାମ ଗୃହଶାଳୀ, ଗ୍ରାମ ତୋଟା, ଗ୍ରାମ ଦେବତା, ଗ୍ରାମ ମହାଦେବ, ଗ୍ରାମ ଶ୍ମଶାନ ଓ ଗ୍ରାମ ହାଟ । ଦ୍ୱିତୀୟ ଭାଗରେ ଛଅଋତୁର ବର୍ଣ୍ଣନା ଏବଂ ଏହି ଋତୁ-ଗୁଡ଼ିକର ଆଗମନରେ ପଲ୍ଲୀବାସୀ ମନର ଭାବନା ଅତି ସୁନ୍ଦର ଭାବରେ ବର୍ଣ୍ଣନା କରାଯାଇଅଛି । ପଲ୍ଲୀଚିତ୍ରର ୩ୟ ଭାଗର ନାମ ଚିତ୍ରମାଳା । ଏଥିରେ ପଲ୍ଲୀଜୀବନର ସୁଖ ଦୁଃଖ, ଭଲ ମନ୍ଦ ପ୍ରଭୃତି ରୂପାୟିତ ହୋଇଅଛି । ଉତ୍କଳ ଶିଳ୍ପୀ, ଉତ୍କଳ କୃଷକ, ଉତ୍କଳ-ଲଳନା, ବାଲି ବିଧବା, ପଲ୍ଲୀର କ୍ଷୁଦ୍ରତା, ପଲ୍ଲୀର କୁସଂସ୍କାର, ପଲ୍ଲୀର ବିଳାସୀ ଯୁବକ, ପଲ୍ଲୀବାସୀ କରଣ, ପଲ୍ଲୀର ସମର୍ଥ ଭିକ୍ଷୁକ ଓ ପଲ୍ଲୀବାସୀ ବ୍ରାହ୍ମଣ ପ୍ରଭୃତି କବିତାଗୁଡ଼ିକ ଏହାର ଅନ୍ତର୍ଗତ ।

ଏହି କବିତାଗୁଡ଼ିକରେ କବିଙ୍କର ସୂକ୍ଷ୍ମ ପର୍ଯ୍ୟବେକ୍ଷଣ ଶକ୍ତିର ପରିଚୟ ମିଳିଅଛି । 'ନିର୍ଝରିଣୀ'ରେ ବିଭିନ୍ନ ଭାବର କେତେକ କବିତା ସ୍ଥାନ ପାଇଅଛି । ସେଗୁଡ଼ିକ ମଧ୍ୟରୁ ନବବର୍ଷା ଭାବନା, ବର୍ଷା ମଙ୍ଗଳ, କାକବାରତା, ପ୍ରଭାତ ଅବକାଶ ପ୍ରଭୃତି କବିତା-ଗୁଡ଼ିକ ଅନନ୍ୟ ଜନପ୍ରିୟତା ଲାଭ କରିଅଛି । ଏହି କବିତା ଗୁଚ୍ଛକୁ ନିର୍ଝରିଣୀ ନାମରେ ନାମିତ କରିବାର କାରଣ ନନ୍ଦ-କିଶୋର ଦେଇଛନ୍ତି । ଏହି କବିତାଗୁଚ୍ଛକୁ ପାଠକରି ଭକ୍ତକବି ମଧୁସୂଦନ ଅତି ଉଚ୍ଚ ମତ ପ୍ରଦାନ କରିଅଛନ୍ତି । ତାଙ୍କ ମତ ହେଉଛି, "ସ୍ୱଦେଶୀୟ ଭାବ-ମାଧୁରୀ ସୁସ୍ନିଗ୍ଧ, ସ୍ୱଦେଶୀୟ ବାଲ୍ୟସ୍ମୃତି ପବିତ୍ରିତ ଏବଂ ଓଡ଼ିଶାର ଅକୃତ୍ରିମ ଜାନପଦ-ଭାବୋଚ୍ଛ୍ୱାସ ସମ୍ବଳିତ ଏପରି ମଧୁମୟ ମର୍ମସ୍ପର୍ଶୀ ବିହଙ୍ଗ କଳସଙ୍ଗୀତ ଆଧୁନିକ ଉତ୍କଳ ସାହିତ୍ୟ କୁଞ୍ଜରେ ଇତିପୂର୍ବେ କୂଜିତ ହୋଇ ନ ଥିଲା, କହିଲେ ଅତ୍ୟୁକ୍ତି ହେବ ନାହିଁ ।" 'ବସନ୍ତକୋକିଳ'ରେ ଭିନ୍ନ ଭିନ୍ନ ସମୟର, ଭିନ୍ନ ଭିନ୍ନ ଭାବର କେତେକ କବିତା ସ୍ଥାନ ପାଇଛି । ଏଥିରେ ଥିବା କେତେକ କବିତା ଉପରେ ପାଶ୍ଚାତ୍ୟ ସାହିତ୍ୟର ପ୍ରଭାବ ଅନୁଭୂତ ହୁଏ । ପାଶ୍ଚାତ୍ୟ ସାହିତ୍ୟର କେତେକ ଅନୁବାଦ ମଧ୍ୟ ଏଥିରେ ସ୍ଥାନ ପାଇଛି । 'ନବ ଶତାବ୍ଦୀର ନିମନ୍ତ୍ରଣ, ଶ୍ରୀକ୍ଷେତ୍ର, ବନପ୍ରିୟ ଓ ଜେମାଦେଈ ପ୍ରଭୃତି କେତେକ କବିତା ଜନପ୍ରିୟତା ଲାଭ କରିଅଛି । ପୁସ୍ତକର ନାମକରଣ ପାଇଁ ଏଥିରୁ ଅନୁମାନ କରିନିଆଯାଇ ପାରେ ଯେ, କବି ନିଜର ପତ୍ନୀ କୋକିଳ ଦେବୀଙ୍କ ନାମାନୁସାରେ ଏହାର ନାମ-କରଣ କରିଅଛନ୍ତି ।

'ତରଙ୍ଗିଣୀ'ରେ ପ୍ରଣୟ ବିଷୟକ ୩୭ ଗୋଟି କବିତା ସ୍ଥାନ ପାଇଅଛି । ଏ କବିତା ଗୁଡ଼ିକର ଭାବ ପ୍ରଣୟ ବିଷୟକ, ତେଣୁ

ବିରହ ମିଳନର ଚିତ୍ର ଏ ଗୁଡ଼ିକରେ ସ୍ପଷ୍ଟ ଭାବରେ ପ୍ରକାଶ ପାଇଛି । ପ୍ରଣୟ ସ୍ମୃତି, ପ୍ରତ୍ୟାଖ୍ୟାତ, ହତାଶ ପ୍ରଣୟୀ ପ୍ରଭୃତି କବିତା-ଗୁଡ଼ିକ ଉଲ୍ଲେଖ ଯୋଗ୍ୟ । ଶୁଭ୍ର ଚିତ୍ରରେ କେତେକ ବର୍ଣ୍ଣନାମୂଳକ ଓ ସଂସ୍କାରମୂଳକ କବିତା ସ୍ଥାନ ପାଇଛି । ଉତ୍କଳ, ଓଡ଼ିଆ ରାଜାଙ୍କ ନିକଟରେ ଓଡ଼ିଆଙ୍କର ଗୃହାଶ୍ରମ, ନିଶୀଥ, ଆକାଶ, ପ୍ରଭାତ, ବାଲ ବିଧବା ଓ ବୃଦ୍ଧ ବିବାହ କବିତା ଗୁଡ଼ିକରେ କବିଙ୍କର ଜାତୀୟ ଦୃଷ୍ଟିକୋଣ ତଥା ସଂସ୍କାରମୂଳକ ମନୋଭାବର ସ୍ପଷ୍ଟ ପରିଚୟ ମିଳେ । 'ଜନ୍ମଭୂମି' ତିନି ଭାଗରେ ବିଭକ୍ତ । ପ୍ରଥମ ଭାଗରେ ଚିର-ସ୍ଥାୟୀ ବନ୍ଦୋବସ୍ତ, ଜଳଭଣ୍ଡାର ନିର୍ମାଣ, ଲବଣ ଉତ୍ପାଦନ, ଶାସନ-କାର୍ଯ୍ୟରେ ଓଡ଼ିଆ ନିଯୁକ୍ତି, ନିମକ ଟିକସ ମାଫି, ଜାତୀୟ ସାହିତ୍ୟ-ଉନ୍ନତି, ପ୍ରାଚୀନ ଉତ୍କଳ ସାହିତ୍ୟ ଲିଖନ ପ୍ରଭୃତି ବିଷୟରେ କବିତା ରଚିତ ହୋଇଅଛି । 'ଜନ୍ମଭୂମି'ର ଦ୍ୱିତୀୟ ଭାଗରେ ୨୩ ଗୋଟି କବିତା ସ୍ଥାନ ପାଇଛି । ସେ ସମୟର ବିଭିନ୍ନ ସାହିତ୍ୟ ବା ସଂଗଠନମୂଳକ ଅନୁଷ୍ଠାନ ପକ୍ଷରୁ ଅନୁରୋଧ କରା ଯାଇଥିବା ହେତୁ ସ୍ୱତନ୍ତ୍ର ଉଦ୍ଦେଶ୍ୟ ନେଇ ଏହି କବିତାଗୁଡ଼ିକ ରଚିତ । ଜନ୍ମଭୂମିର ତୃତୀୟ ଭାଗରେ ଜନ୍ମଭୂମିର କୃତୀ ସନ୍ତାନମାନଙ୍କ ଉଦ୍ଦେଶ୍ୟରେ ରଚିତ ୧୩ ଗୋଟି କବିତା ଅଛି । ଭକ୍ତକବି ମଧୁ-ସୂଦନ, ରାମଚନ୍ଦ୍ରଭଞ୍ଜ, ଅଭିରାମ ଭଞ୍ଜ, ଫକୀର ମୋହନ, ମୃତ୍ୟୁଞ୍ଜୟ ରଥ, ନୀଳମଣି ବିଦ୍ୟାରତ୍ନ, ଗଙ୍ଗାଧର ମେହେର, କୁନ୍ତଳାକୁମାରୀ ସାବତ, ରାଧାନାଥ ଓ ରାଜା ରାମମୋହନ ରାୟ ପ୍ରଭୃତିଙ୍କୁ ଉଦ୍ଦେଶ୍ୟ କରି ଏ କବିତାଗୁଡ଼ିକ ଲେଖା ଯାଇଛି । ଅଣତିରିଶ ଗୋଟି ଶିକ୍ଷଣୀୟ ବିଷୟକୁ ଗ୍ରହଣ କରି ୨୯ଟି କବିତାରେ କବି ବିଭିନ୍ନ ଭାବଧାରାର ପରିଚୟ ଦେଇ ତାହାକୁ ନିର୍ମାଲ୍ୟ-ନାମରେ ନାମିତ କରିଛନ୍ତି । ପ୍ରଭାତ ସଙ୍ଗୀତରେ ତାଙ୍କ ବାଲ୍ୟ-

ଭାଳର ସ୍ମୃତି ପ୍ରକାଶ ପାଇଛି । କବିଙ୍କର ଶେଷ ଜୀବନରେ ଲେଖିଥିବା କବିତାଗୁଡ଼ିକ ସନ୍ଧ୍ୟାସଙ୍ଗୀତ ନାମରେ ନାମିତ । ସନ୍ଧ୍ୟା ସଙ୍ଗୀତ ଲେଖିଲା ବେଳକୁ କବିଙ୍କର ଦୃଷ୍ଟି ଶକ୍ତି ହ୍ରାସ ପାଇଥିଲା । ତେଣୁ ତାଙ୍କର ଆତ୍ମଜା ଶ୍ରୀମତୀ ସରସ୍ୱତୀ ଦେବୀ କବିଙ୍କ ମୁଖରୁ ଶୁଣି କବିତା ଗୁଡ଼ିକ ଲେଖିଥିଲେ । ଏହି କବିତା ଗୁଡ଼ିକରେ କବିଙ୍କର ସମଗ୍ର ଜୀବନର ସ୍ମୃତି ରୂପ ପାଇଛି । ବର୍ଣ୍ଣନାତ୍ମକ କବିତା ଗୁଡ଼ିକ ଭିତରେ କବିଙ୍କ ଜୀବନର ସ୍ମୃତି ଗୁଡ଼ିକ ରୂପ ପାଇବା ସଙ୍ଗେ ସଙ୍ଗେ ସେ ସ୍ମୃତିର ବିଚ୍ଛେଦ ଯୋଗୁଁ କବି ହୃଦୟର ବେଦନା ପ୍ରକାଶ ପାଇଛି ।

ନନ୍ଦକିଶୋରଙ୍କର ବିଭିନ୍ନ ସମୟରେ ରଚିତ କବିତା ଗୁଡ଼ିକ ବିଭିନ୍ନ ଭାବକୁ ଅବଲମ୍ବନ କରି ରଚିତ ହୋଇଥିଲେ ହେଁ ସେଗୁଡ଼ିକର ସ୍ୱାତନ୍ତ୍ର୍ୟ ଯେ ନିଶ୍ଚୟ ଅଛି, ଏହା ସ୍ୱୀକାର୍ଯ୍ୟ । ପଲ୍ଲୀର ପ୍ରକୃତି ତାଙ୍କ କବିତାର ମୁଖ୍ୟ ଅବଲମ୍ବନ ହେଲେହେଁ ଅଧିକାଂଶ ସ୍ଥଳରେ କବି ପଲ୍ଲୀର ସୁଖ ଦୁଃଖ ଭିତରେ ସତ୍ୟ ଓ ନୀତିର ପୂଜକ ରୂପେ ଦେଖା ଦେଇଛନ୍ତି । ତାଙ୍କର ଜାତୀୟତାବାଦୀ କବିତା ଭିତରେ ଜାତିର ମହତ୍ତ୍ୱ ପ୍ରତିପାଦନ କରିବାର ଲକ୍ଷ୍ୟ ଯେତିକି ଦେଖାଯାଏ । ସମାଜର ନାନା କୁସଂସ୍କାରକୁ ସଂସ୍କାର କରିବାର ଉଦ୍ଦେଶ୍ୟ ସେତିକି ଦେଖାଯାଏ । କବିଙ୍କର ଜୀବନର ଅନୁଭୂତିକୁ ଆଶ୍ରୟ କରି ଅଧିକାଂଶ କବିତା ରଚିତ ହୋଇଥିବାରୁ କବିତା ଗୁଡ଼ିକରେ ବାସ୍ତବତାର ମାତ୍ରା ଯଥେଷ୍ଟ ବେଶୀ । ତାଳଚେର ପ୍ରବନ୍ଧ ପ୍ରତିଯୋଗିତାରେ ପୁରସ୍କାର ପ୍ରାପ୍ତ ପ୍ରବନ୍ଧର କେତେ ଅଂଶକୁ ସେ ନିଜର ସୁନିପୁଣ ଲେଖନୀ ସାହାଯ୍ୟରେ କବିତାରେ ରୂପାନ୍ତରିତ କରି ତାକୁ ପଲ୍ଲୀଚିତ୍ର ନାମ ଦେଇଛନ୍ତି । ସବୁ ଗୁଡ଼ିକ କବିତାରେ କବିଙ୍କର ସୌନ୍ଦର୍ଯ୍ୟବାଦୀ ଦୃଷ୍ଟିକୋଣ ପ୍ରକୃତି ଆଡ଼କୁ

ଅଗ୍ରସର ହୋଇଛନ୍ତି । ତାଙ୍କର କବିତା ଗୁଡ଼ିକୁ ପାଠ କଲେ ମନେହୁଏ, ଫକୀରମୋହନ ଯେପରି ଆମର ସାମାଜିକ ଜୀବନର ଚିତ୍ର ଦେଇଲାବେଳେ ପଲ୍ଲୀର ପୋଖରୀକୂଳ ଠାରୁ ଆରମ୍ଭ କରି ପଣ୍ଡିତ ସଭା ପର୍ଯ୍ୟନ୍ତ ଅଗ୍ରସର ହୋଇଛନ୍ତି, ନନ୍ଦକିଶୋର ଠିକ ସେହିପରି ମାର୍ଗରେ ଅଗ୍ରସର ହୋଇଛନ୍ତି । ତାଙ୍କ ଉପରେ ପାଶ୍ଚାତ୍ୟ ପ୍ରଭାବ ଯଥେଷ୍ଟ ଥିଲା । ତେଣୁ ତାଙ୍କର କେତେକ କବିତାରେ ପାଶ୍ଚାତ୍ୟ ଭାବଧାରାର ପରିଚୟ ମିଳିଲେ ହେଁ ସେଗୁଡ଼ିକ ଏପରି ଅବସ୍ଥାରେ ରଚିତ ଯେ, ତାହା ଜାତୀୟତାର ବିରୁଦ୍ଧାଚରଣ ନ କରି ଜାତିପ୍ରତି ମଙ୍ଗଳକର ହୋଇଅଛି । କବିଙ୍କର ଦୃଷ୍ଟି ସୁଦୂରପ୍ରସାରୀ ହେଲେ ହେଁ ଏହି ଦୃଷ୍ଟି ପଲ୍ଲୀର ଅଭ୍ୟନ୍ତରରୁହିଁ ଆତ୍ମପ୍ରକାଶ କରିଅଛି ।

**ନନ୍ଦକିଶୋରଙ୍କ କାବ୍ୟ:**— ନନ୍ଦକିଶୋର ବଳଙ୍କର ସୀତା ବନବାସ କାବ୍ୟ ୧୯୦୧ ସାଲରେ ରଚିତ ହୋଇଥିଲା । ଏହି କାବ୍ୟଟି ୧୪ଟି ସର୍ଗରେ ବିଭକ୍ତ । ରାମଚନ୍ଦ୍ରଙ୍କର ସିଂହାସନ ଆରୋହଣଠାରୁ ଅନ୍ତିମ ଜୀବନ ପର୍ଯ୍ୟନ୍ତ ଘଟଣାବଳୀ ଦ୍ୱିତୀୟ ସର୍ଗଠାରୁ ଚତୁର୍ଦ୍ଦଶ ସର୍ଗ ଭିତରେ ବର୍ଣ୍ଣିତ । ଉକ୍ତ କାବ୍ୟର ୧ମ ସର୍ଗ ସରସ୍ୱତୀ ଆବାହନରେ ହିଁ ପର୍ଯ୍ୟବସିତ । ଉକ୍ତ କାବ୍ୟର ବିୟୋଗାନ୍ତ ପରିଣତି ଚିତ୍ତାକର୍ଷକ ହୋଇଅଛି । ସୀତା ବନବାସ କଥାବସ୍ତୁକୁ ଅବଲମ୍ବନ କରି ଆଧୁନିକ ଯୁଗରେ ବିଭିନ୍ନ କବିଙ୍କ ହାତରେ କାବ୍ୟସମୂହ ଲେଖାଯାଇଅଛି । ନନ୍ଦକିଶୋରଙ୍କର ସୀତା ବନବାସ ପରେ ୧୯୦୮ ସାଲରେ ଭକ୍ତକବି ମଧୁସୂଦନ ଭବଭୂତିଙ୍କ ଉତ୍ତର ରାମଚରିତକୁ ଅନୁବାଦ କରିଥିଲେ । ୧୯୧୪ ସାଲରେ କବି ଗଙ୍ଗାଧର ମେହେର ତପସ୍ୱିନୀ କାବ୍ୟ ରଚନା କରିଥିଲେ । ଏ ସମସ୍ତ କାବ୍ୟର କଥାବସ୍ତୁ ଗୋଟିଏ ହେଲେହେଁ କାବ୍ୟରେ କବିମାନଙ୍କର ମୌଳିକତା ଓ ସ୍ୱାତନ୍ତ୍ର୍ୟ ଉତ୍ତମ ରୂପେ ରକ୍ଷିତ

ହୋଇ ପାରିଅଛି । 'କୃଷ୍ଣକୁମାରୀ' ନନ୍ଦ କିଶୋରଙ୍କର ଦ୍ୱିତୀୟ କାବ୍ୟ । ମିବାରର ରାଣା ଭୀମ ସିଂହଙ୍କର କନ୍ୟା କୃଷ୍ଣକୁମାରୀଙ୍କୁ ଏହି କାବ୍ୟର ନାୟିକା ରୂପେ ଗ୍ରହଣ କରାଯାଇଅଛି । ଯୋଧପୁର ରାଜା ମାନସିଂ କୃଷ୍ଣକୁମାରୀଙ୍କର ପ୍ରଣୟ ପ୍ରାର୍ଥୀ ହେଲେ । ମାତ୍ର ଏହା ପୂର୍ବରୁ କୃଷ୍ଣକୁମାରୀଙ୍କ ସହିତ ଜଗତ୍ ସିଂହଙ୍କର ପରିଚୟ ସ୍ୱୀକୃତ ହୋଇଥିଲା । ମାନସିଂ ମୋଗଲ ଶକ୍ତିର ଅଧୀନସ୍ଥ ଥିବାରୁ ରାଜପୁତ୍ରମାନଙ୍କ ଚକ୍ଷୁରେ ନିତାନ୍ତ ନୀଚ ଥିଲେ । ତେଣୁ ରାଜପୁତ୍ର କନ୍ୟା କୃଷ୍ଣକୁମାରୀ ମାନସିଂଙ୍କୁ ବିବାହ କରିବା ନିମିତ୍ତ ଇଚ୍ଛା ପ୍ରକାଶ କରିନାହାନ୍ତି । ଏହାର ପରିଣାମରେ ମାନସିଂ ମୋଗଲ ସେନା ସାହାଯ୍ୟରେ ମିବାରର ରାଜଧାନୀ ଚିତୋର ଆକ୍ରମଣ କଲେ । ମାନସିଂ ଓ ଜଗତ୍ ସିଂଙ୍କ ଯୁଦ୍ଧରେ ଜଗତ୍ ସିଂ ପରାସ୍ତ ହେଲେ । ରାଣୀ ସେନାପତି ଦୌଲତ ସିଂଙ୍କୁ କୃଷ୍ଣକୁମାରୀଙ୍କୁ ହତ୍ୟା କରିବା ନିମିତ୍ତ ପଠାଇଲେ । ମାତ୍ର ସେ ସେଥିରେ ସମ୍ମତି ପ୍ରକାଶ କଲେ ନାହିଁ । ଅନ୍ୟ ଜଣେ ଆତତାୟୀ କୃଷ୍ଣକୁମାରୀଙ୍କୁ ହତ୍ୟା କରିବାକୁ ଯାଇ ତାଙ୍କୁ ସୁପ୍ତ ଅବସ୍ଥାରେ ଦେଖି ହତ୍ୟା କରି ପାରିଲେ ନାହିଁ । ତାପରେ କୃଷ୍ଣକୁମାରୀଙ୍କୁ ବିଷପାନ କରିବାକୁ ଦିଆଗଲା । ତିନଥର ବିଷପାନ କରିବା ପରେ କୃଷ୍ଣାଙ୍କର ମୃତ୍ୟୁ ହେଲା । ଏହି ବିଷୟ-ବସ୍ତୁକୁ ନେଇ କୃଷ୍ଣକୁମାରୀ କାବ୍ୟର ପରିକଳ୍ପନା ଭଙ୍ଗୀ ଯେ ଅତ୍ୟନ୍ତ ମର୍ମସ୍ପର୍ଶୀ ହୋଇଛି, ଏଥିରେ ସନ୍ଦେହ କରିବାର କିଛି ନାହିଁ । କାବ୍ୟର ପରିସମାପ୍ତିରେ କରୁଣରସାତ୍ମକ ବର୍ଣ୍ଣନା ଯେ କୌଣସି ପାଠକର ଅନ୍ତରକୁ ବେଦନାସିକ୍ତ କରିବ ।

ନନ୍ଦକିଶୋରଙ୍କ ତୃତୀୟ କାବ୍ୟ 'ଶର୍ମିଷ୍ଠା'ର କଥାବସ୍ତୁ ପୁରାଣର କଙ୍କାଳରୁ ଗୃହୀତ ହୋଇଥିଲେ ହେଁ କବିଙ୍କର ମୌଳିକ ଚିନ୍ତାଶକ୍ତି ବଳରେ ଏକ ବଳିଷ୍ଠ ରୂପ ପରିଗ୍ରହ କରିପାରିଅଛି ।

ଅସୁର ରାଜା ବୃଷପର୍ବାଙ୍କର କନ୍ୟା ଶର୍ମିଷ୍ଠା ଓ ଶୁକ୍ରାଚାର୍ଯ୍ୟଙ୍କର କନ୍ୟା ଦେବଯାନୀଙ୍କର ଜଳକେଳି ଶେଷରେ ବସ୍ତ୍ର ପରିବର୍ତ୍ତିତ ହେବା ଯୋଗୁଁ କଳହ ହୋଇଅଛି । ଫଳରେ ଦେବଯାନୀଙ୍କୁ ଶର୍ମିଷ୍ଠାଙ୍କର ସଖୀ ଗୋଟିଏ କୂପ ମଧ୍ୟକୁ ନିକ୍ଷେପ କରି ଚାଲିଯାଇଛି । ସେହି କୂପରେ ରୋଦନ କରିବା ଅବସ୍ଥାରେ ଯଯାତି ଶିକାର ନିମନ୍ତେ ଆସି କୂପରୁ ଦେବଯାନୀଙ୍କୁ ଉଦ୍ଧାର କରିଛନ୍ତି । ଏହିଠାରେ ଦେବଯାନୀଙ୍କର ଯଯାତିଙ୍କ ପ୍ରତି ଅନୁରକ୍ତ ଭାବ ପ୍ରକାଶ ପାଇଅଛି । ଶର୍ମିଷ୍ଠାଙ୍କର ଏତାଦୃଶ ଆଚରଣରେ କ୍ଷୁବ୍ଧ ହୋଇ ଶୁକ୍ରାଚାର୍ଯ୍ୟଙ୍କୁ ଅସୁର ରାଜ୍ୟ ତ୍ୟାଗ କରି ଚାଲିଯିବା ପାଇଁ ଦେବଯାନୀ କହିଥିଲେ; ମାତ୍ର ଶୁକ୍ରାଚାର୍ଯ୍ୟ ଚାଲିଗଲେ ଦେବାସୁର ଯୁଦ୍ଧରେ ଅସୁରମାନେ ନିଜ ମୃତ୍ୟୁମୁଖରେ ପଡ଼ିବେ ଏବଂ ନିଶ୍ଚୟ ସମୂଳେ ବିନାଶ ହେବେ, ଏ ଆଶଙ୍କା କରି ବୃଷପର୍ବା ଦେବଯାନୀଙ୍କୁ ରାଜ୍ୟ ଛାଡ଼ି ନ ଯିବା ପାଇଁ ଅନୁରୋଧ କଲେ । ଦେବଯାନୀ ଗୋଟିଏ ସର୍ତ୍ତ ରଖିଲେ ଯେ, ଶର୍ମିଷ୍ଠା ତାଙ୍କର ଦାସୀ ହୋଇ ରହିଲେ ସେ ଅସୁର ରାଜ୍ୟରେ ରହିବେ । ପରିଣାମରେ ତାହାହିଁ ହେଲା । ଦେବଯାନୀ ଯଥାସମୟରେ ଯଯାତିଙ୍କୁ ବିବାହ କରି ଶ୍ୱଶୁରାଳୟରେ ରହିବା ସମୟରେ ଶର୍ମିଷ୍ଠା ତାଙ୍କର ଦାସୀ ହୋଇ ରହିଲେ । ଉକ୍ତ କାବ୍ୟରେ ଶର୍ମିଷ୍ଠାଙ୍କର ଆତ୍ମତ୍ୟାଗର ଜ୍ୱଳନ୍ତ ଉଦାହରଣ ଯେପରି ଭାବରେ ପ୍ରକାଶ ପାଇଛି, ତାହା ଅନନ୍ୟସାଧାରଣ । ପିତାଙ୍କର ମଙ୍ଗଳ ପାଇଁ, ରାଜ୍ୟର ମଙ୍ଗଳ ପାଇଁ ଯୁବତୀ ଶର୍ମିଷ୍ଠା ନିଜ ଜୀବନର ସମସ୍ତ ବିଳାସରେ ଜଳାଞ୍ଜଳି ଦେଇ ଦାସୀତ୍ୱ ଅବଲମ୍ବନ କରିବାରେ ଶର୍ମିଷ୍ଠା ଚରିତ୍ରର ମହନୀୟତା ଏକାନ୍ତ ଅତୁଳନୀୟ । ଉକ୍ତ କାବ୍ୟରେ କଥାବସ୍ତୁର ଅନ୍ତର୍ଗତ ସହିତ ପ୍ରକୃତିର ବର୍ଣ୍ଣନା, କ୍ଷମାର ମହତ୍ତ୍ୱ, ଆର୍ଯ୍ୟ ଅନାର୍ଯ୍ୟ ସମ୍ପ୍ରଦାୟର ମୌଳିକ ତତ୍ତ୍ୱ, ଦୈହିକ ଓ ହାର୍ଦ୍ଦିକ

ପ୍ରେମର ଦ୍ୱନ୍ଦ୍ୱ ପ୍ରଭୃତି ବିଷୟରେ କବି ଯେଉଁ ଚିନ୍ତାଧାରାର ପ୍ରକାଶ କରିଛନ୍ତି, ତାହା ହୃଦୟଗ୍ରାହୀ । ଶର୍ମିଷ୍ଠା କାବ୍ୟର କେତେକ ଛନ୍ଦରେ ଗଙ୍ଗାଧର ମେହେରଙ୍କର ତପସ୍ୱିନୀ କାବ୍ୟର କେତେକ ଛନ୍ଦର ପ୍ରଭାବ ପଡ଼ିଥିବାର ପରିଲକ୍ଷିତ ହୁଏ । କୂପ ମଧ୍ୟସ୍ଥ ଦେବଯାନୀଙ୍କର ଅବସ୍ଥା ବର୍ଣ୍ଣନା, ଭାଗିରଥୀ ତୀରସ୍ଥ ନିର୍ବାସିତା ସୀତାଙ୍କର ଅବସ୍ଥା ସହିତ ତୁଳନୀୟ, ଶାସକ ଓ ପ୍ରେମିକ ରୂପେ ଯଯାତିଙ୍କର ଚରିତ୍ରର ବର୍ଣ୍ଣନା ରାମଚନ୍ଦ୍ରଙ୍କର ଚରିତ୍ର-ବର୍ଣ୍ଣନା ସହ ତୁଳନୀୟ । ଦେବଯାନୀଙ୍କ ନିକଟରେ ଶର୍ମିଷ୍ଠାଙ୍କର ଦାସୀ-ଜୀବନ ସୀତାଙ୍କର ବାଲ୍ମୀକି ଆଶ୍ରମରେ ତପସ୍ୱିନୀ ଜୀବନ ସହିତ ତୁଳନୀୟ । ଏହି କେତେକ ଛନ୍ଦରେ ଦେଖିଲେ ମନେହୁଏ, ତପସ୍ୱିନୀ କାବ୍ୟର ପ୍ରଭାବ ଶର୍ମିଷ୍ଠା କାବ୍ୟ ଉପରେ ପଡ଼ିଅଛି ।

**ନନ୍ଦ କିଶୋରଙ୍କର ଉପନ୍ୟାସ ଓ ଗଳ୍ପ:**—ପଲ୍ଲୀ କବି ନନ୍ଦକିଶୋରଙ୍କର ଲେଖନୀରୁ ଏକମାତ୍ର ଉପନ୍ୟାସ କନକଲତା ଆତ୍ମପ୍ରକାଶ କରିଅଛି । ଏହି ଉପନ୍ୟାସ ୧୯୨୫ ସାଲରେ ରଚିତ ହୋଇଥିବାର ଜଣାଯାଏ । ଲକ୍ଷ୍ମୀ ନାମକ ଆଉ ଏକ ରଚନା ତାଙ୍କର ଥିଲେ ହେଁ ତାହା ଉପନ୍ୟାସ ନୁହେଁ । ତାହା ଏକ ଗଳ୍ପ ।

ଉପନ୍ୟାସ ହିସାବରେ କନକଲତାକୁ ବିଚାର କରିବାକୁ ହେଲେ ଆଧୁନିକ ଓଡ଼ିଆ ସାହିତ୍ୟରେ ଫକୀର ମୋହନଙ୍କ ଉପନ୍ୟାସ-ଗୁଡ଼ିକ ପ୍ରକାଶିତ ହେବା ସମୟରେ ଏହି ଉପନ୍ୟାସର ଯେ ଜନ୍ମ, ଏ କଥା ମନେ ରଖିବାକୁ ହେବ । ଫକୀର ମୋହନଙ୍କ ଏହି ଉପନ୍ୟାସ ଗୁଡ଼ିକର ମାନଦଣ୍ଡ ବିଚାର କରି ସେ ଗୁଡ଼ିକ ସହିତ କନକଲତାକୁ ତୁଳନା କଲେ ଆଲୋଚକଙ୍କୁ କନକଲତାର ମୂଲ୍ୟ ନିର୍ଦ୍ଧାରଣରେ

ନିର୍ଣ୍ଣୟ ହେବାକୁ ପଡ଼ିବ । ଉପନ୍ୟାସର ଯେତେ ଗୁଡ଼ିଏ ଗୁଣର୍ଦ୍ଧିକ ବିଶେଷତ୍ୱ ଥିବାର କଥା, ସେ ଗୁଡ଼ିକ ଯଥାଯଥ ଭାବରେ କନକ-ଲତାରେ ରକ୍ଷିତ ହୋଇ ପାରିନାହିଁ । କନକଲତାକୁ ଗୋଟିଏ ପ୍ରେମମୂଳକ ବଡ଼ ଗଳ୍ପ ରୂପେ ଗ୍ରହଣ କରିନେଲେ କିଛି କ୍ଷତି ହେବନାହିଁ ।

ବର୍ଣ୍ଣନା ଶୈଳୀରେ ନନ୍ଦକିଶୋରଙ୍କ ପାରଦର୍ଶିତା ସ୍ୱୀକାର୍ଯ୍ୟ । ମାତ୍ର କବିତାରେ ବର୍ଣ୍ଣନା ଶୈଳୀ ଓ ଉପନ୍ୟାସରେ ବର୍ଣ୍ଣନା-ଶୈଳୀର ଯଥେଷ୍ଟ ପାର୍ଥକ୍ୟ ଅଛି । କନକଲତାର ବର୍ଣ୍ଣନା ଶୈଳୀ ଦେଖିଲେ ମନେହୁଏ । ଯେତେ ଯେପରି ଲେଖକ ତାଙ୍କର ପଲ୍ଲୀପ୍ରକୃତିକୁ କବିତାରେ ବର୍ଣ୍ଣନା କରିବା ରୀତିକୁ ଛାଡ଼ି ପାରିନାହାନ୍ତି । ଫଳରେ ଉପନ୍ୟାସର ବିଶେଷତ୍ୱ ଯେତେଦୂର ରକ୍ଷିତ ହେବାର କଥା, ତାହା ହୋଇ ପାରିନାହିଁ । ଉପନ୍ୟାସର ଆରମ୍ଭରେ ଓ ଉପନ୍ୟାସର ମଧ୍ୟ ଭାଗରେ ପ୍ରକୃତି-ବର୍ଣ୍ଣନାରେ ଲେଖକ ନିଜର ପ୍ରକୃତି ପର୍ଯ୍ୟ-ବେକ୍ଷଣ ଶକ୍ତିର ପରିଚୟ ଦେଇଛନ୍ତି ।

କନକଲତାରେ ଚରିତ୍ର ଚିତ୍ରଣ ପ୍ରତି ଦୃଷ୍ଟି ଦେଲେ ଦେଖା-ଯାଏ, ରାଜେନ୍ଦ୍ର ଚରିତ୍ର ସେ ସମୟର ଏକ ନୂତନ ଶିକ୍ଷାଭିମାନୀ ଗୋଷ୍ଠୀର ପ୍ରତିନିଧି । ତେଣୁ ରାଜେନ୍ଦ୍ରଙ୍କ ଜୀବନରେ ପ୍ରତ୍ୟେକ କାର୍ଯ୍ୟରେ ସଂସ୍କାରମୂଳକ ପ୍ରୟାସ ଦେଖା ଦେଇଛି । ଧନଞ୍ଜୟ ରାୟ ସେହି ସମୟର ଜଣେ ଆଧୁନିକ ଶିକ୍ଷିତ ଯୁବକ ହେଲେହେଁ ତାଙ୍କର ଦୃଷ୍ଟି ଭିନ୍ନମୁଖୀ । ରାଜେନ୍ଦ୍ର ଚରିତ୍ରର ପ୍ରେମିକତା ପ୍ରତି ଲେଖକ ସବୁବେଳେ ସଚେତନ ରହିଛନ୍ତି । କନକଲତା ଗୋଟିଏ ଅଭିଜାତ୍ୟ ବଂଶର ଅଲଅଲି କନ୍ୟା । ତାର ଜୀବନରେ ଧନଞ୍ଜୟଙ୍କର ଆବିର୍ଭାବ ଏକ ସମସ୍ୟାରେ ପରିଣତ ହୋଇଅଛି । ଧନଞ୍ଜୟଙ୍କ ସହିତ କନକ-

ଲତାର ସାକ୍ଷାତ ପରେ କନକଲତାର ଜୀବନରେ ଯେଉଁ ସବୁ ହାବଭାବ ଦେଖା ଦେଇଛି, ସେ ସବୁ ପାଠକଙ୍କୁ ମନେ ହୁଏ, ସତେ ଯେପରି କାବ୍ୟ ଯୁଗର ଏକ ନାୟିକା ବିରହିଣୀ ଅବସ୍ଥାରେ ବନ୍ଦିନୀ ଦଶା ଭୋଗ କରିଅଛି । 'କନକଲତା'ର ଅନ୍ୟ ସବୁ ଗୌଣ ଚରିତ୍ରଗୁଡ଼ିକୁ ଲେଖକ କଥାବସ୍ତୁକୁ ସାହାଯ୍ୟ କଲାଭଳି ଆବଶ୍ୟକତା ଅନୁଯାୟୀ ଚିତ୍ରିତ କରିଛନ୍ତି ।

ଆଧୁନିକ ଓଡ଼ିଆ ଉପନ୍ୟାସ ଫକୀରମୋହନଙ୍କ ହାତରେ ଯେପରି ଭାବରେ ବିକାଶ ଲାଭ କରିଛି, ସେଥିରୁ ସମସାମୟିକ ସମାଜର ଅନେକ ସମସ୍ୟାର ଚିତ୍ର ମିଳିଥାଏ । ନନ୍ଦକିଶୋରଙ୍କ ଉପନ୍ୟାସରେ ସାମାଜିକ ସମସ୍ୟାରୂପେ କେବଳ ଗୋଟିଏ କଥା ଦେଖା ଦେଇଛି, ତାହା ହେଉଛି ହିନ୍ଦୁ ବିବାହ ମଧ୍ୟରେ ଯୌତୁକ ପ୍ରଥା । ଯୌତୁକ ପ୍ରଥାର ଅପକାରିତା ବିଷୟରେ ଲେଖକ ସଚେତନ ଥିଲେହେଁ ଏହି ସମସ୍ୟାର ସମାଧାନ ପାଇଁ କୌଣସି ବିଶ୍ଳେଷଣ ଦେଇ ନାହାନ୍ତି । ତେଣୁ 'କନକଲତା' ଉପନ୍ୟାସ ଗୋଟିଏ ବଡ଼ ଗଳ୍ପ ହିସାବରେ ସୁଖପାଠ୍ୟ ହେଲେହେଁ ଆଧୁନିକ ଯୁଗର ଉପନ୍ୟାସ ହିସାବରେ ନିଜର ସାର୍ଥକ ପରିଚୟ ଦେବାକୁ ଅକ୍ଷମ । ପଲ୍ଲୀକବି ହିସାବରେ ନନ୍ଦକିଶୋରଙ୍କର ଗୌରବ ଯେତେ ପରିମାଣରେ ଅନୁଭୂତ ହୁଏ, ଔପନ୍ୟାସିକ ହିସାବରେ ତାଙ୍କର ଗୌରବ ସେତେ ପରିମାଣରେ ଅନୁଭୂତ ହୁଏ ନାହିଁ ।

ଫକୀର ମୋହନଙ୍କ 'ମାଧ ମହାନ୍ତିଙ୍କ କନ୍ୟା ସୁନା' ଗଳ୍ପ ସହିତ ନନ୍ଦ କିଶୋରଙ୍କ 'ଲକ୍ଷ୍ମୀ' ଗଳ୍ପର ସାଦୃଶ୍ୟ ଥିବାର ଲକ୍ଷ୍ୟ କରି ଓଡ଼ିଆ ସାହିତ୍ୟର କେତେକ ସମାଲୋଚକ 'ଲକ୍ଷ୍ମୀ' ଗଳ୍ପକୁ ଫକୀର ମୋହନଙ୍କ ଉକ୍ତ ଗଳ୍ପର ଏକ ପ୍ରତିଧ୍ୱନି ରୂପେ ଗ୍ରହଣ

କରନ୍ତି । କିନ୍ତୁ ପ୍ରକୃତ ପକ୍ଷରେ ଆଲୋଚନା କଲେ ଜଣାଯିବ ଯେ, ନନ୍ଦକିଶୋରଙ୍କ 'ଲକ୍ଷ୍ମୀ' ଗଳ୍ପ ଫକୀର ମୋହନଙ୍କ 'ରେବତୀ' ଗଳ୍ପର ଏକ ସମ୍ପ୍ରସାରିତ ସଂସ୍କରଣ । ଫକୀର ମୋହନ ରେବତୀକୁ ଏକ ଶିକ୍ଷିତା ବାଳିକା ରୂପେ ଚିତ୍ରଣ କରି ତାର ପ୍ରକୃତ ଜୀବନର ବିକାଶ ଦେଖାଇବା ପୂର୍ବରୁ ତାକୁ ଇହ ଜଗତରୁ ବିଦାୟ ଦେଇଛନ୍ତି । ସେଥିପାଇଁ ନନ୍ଦକିଶୋର ଲକ୍ଷ୍ମୀକୁ ଏକ ଶିକ୍ଷିତା ବାଳିକା ରୂପେ ଗଢ଼ି ତାର ଜୀବନର ପ୍ରକୃତ ବିକାଶ ଦେଖାଇଛନ୍ତି । ଆଧୁନିକ ଯୁଗର ଏକ ଶିକ୍ଷିତା ବାଳିକା-ଜୀବନର ପ୍ରଥମ ପର୍ଯ୍ୟାୟର ପ୍ରତିନିଧି ଯଦି 'ରେବତୀ' ହୁଏ, ତାହା ହେଲେ ସେହି ଶିକ୍ଷିତ ବାଳିକାର ଦ୍ୱିତୀୟ ପର୍ଯ୍ୟାୟର ଉତ୍କୃଷ୍ଟ ପ୍ରତିନିଧି 'ଲକ୍ଷ୍ମୀ' ।

ଲକ୍ଷ୍ମୀ ଶିକ୍ଷିତା ହୋଇଥିବାରୁ ତାର ବିବାହ ଠିକ୍ ସମୟରେ ହୋଇ ପାରିନାହିଁ । ବୟସ ବଢ଼ିବା ସଙ୍ଗେ କନ୍ୟାସୁନାର ପରିମାଣ ବଢ଼ି ଚାଲିଛି । ଲକ୍ଷ୍ମୀର ରୂପ ଓ ଗୁଣରେ ଆକୃଷ୍ଟ ହୋଇ ନାରାୟଣ ସାତଶହ ଟଙ୍କା କନ୍ୟା ସୁନା ଦେଇ ଲକ୍ଷ୍ମୀକୁ ବିବାହ କରିଛି । ଲକ୍ଷ୍ମୀ ଶାଶୁ ଘରକୁ ଯିବା ବେଳେ ବାପଘରୁ ସେହି ଟଙ୍କା ପୁଡ଼ିଆଟି ପେଟତଳେ ଯାକି ନେଇଯାଇଛି । ଫଳରେ ଦେଖଣାହାରିମାନେ ଲକ୍ଷ୍ମୀକୁ ଅନ୍ତଃସତ୍ତ୍ୱା ମନେ କରିଛନ୍ତି ଏବଂ ନାରାୟଣ ଏଥିରେ ବିଚଳିତ ହୋଇ ଲକ୍ଷ୍ମୀଠାରୁ ପ୍ରତିଶୋଧ ନେବାକୁ ଇଚ୍ଛା କରିଛି । ମାତ୍ର ନାରାୟଣ ଯେତେବେଳେ ଜାଣିବାକୁ ପାଇଲା ଯେ, ଲକ୍ଷ୍ମୀ ଅନ୍ତଃସତ୍ତ୍ୱା ନୁହେଁ ଓ ଲକ୍ଷ୍ମୀ ତାର ସେହି ଟଙ୍କାକୁ ଆଣିବା ଯୋଗୁଁ ଦେଖଣାହାରିମାନେ ତାକୁ ଏ ପ୍ରକାର ଅନୁମାନ କରିଛନ୍ତି, ସେତେବେଳେ ନାରାୟଣ ଅତି ଆନନ୍ଦିତ ହୋଇଛି । କ୍ଷୁଦ୍ର ଗଳ୍ପ ହିସାବରେ 'ଲକ୍ଷ୍ମୀ' ଗଳ୍ପରେ କେତେକ ତ୍ରୁଟି ଥିଲେହେଁ ତାହା ଯେ ସୁଖପାଠ୍ୟ ହୋଇପାରିଛି, ଏଥିରେ ମତଦ୍ୱୈଧର ଆଶଙ୍କା ନାହିଁ ।

## ନନ୍ଦକିଶୋରଙ୍କର ରଚନାରେ ପଲ୍ଲୀ ପ୍ରକୃତି:—

ପଲ୍ଲୀକବି ନନ୍ଦକିଶୋରଙ୍କର ଲଘୁ କବିତାଗୁଡ଼ିକ ପଲ୍ଲୀକବିତା ନାମରେ ନାମିତ । କବିତାଗୁଡ଼ିକର ପ୍ରତ୍ୟେକ ଛନ୍ଦରେ ପଲ୍ଲୀର ସରଳ ପ୍ରକୃତି ରୂପାୟିତ । ପଲ୍ଲୀର ଅବସ୍ଥିତି, ପଲ୍ଲୀର ହାଟ, ପଲ୍ଲୀର କୃଷକ, ପଲ୍ଲୀର ସୀମନ୍ତିନୀଗଣ, ପଲ୍ଲୀର ଦେବମନ୍ଦିର ପ୍ରଭୃତି କୌଣସିଟିର ବର୍ଣ୍ଣନା ତାଙ୍କ ଲେଖନୀରୁ ବାଦ ଯାଇନାହିଁ । ଗ୍ରୀଷ୍ମଋତୁରେ ପଲ୍ଲୀର ଗୃହିଣୀମାନଙ୍କୁ ବର୍ଣ୍ଣନା କରି କବି ଲେଖିଛନ୍ତି—

"ଗଣିଫୁଲପରି ପଡ଼ିଥାଏ ଜହ୍ନ
ପିଢ଼ା ପାହାଚରେ ବସି
ପଲ୍ଲୀ ସୀମନ୍ତିନୀ ଗୃହିଣୀ ଗଣରେ
କରନ୍ତି ଆଳାପ ବସି ।"

ପୁଣି ବର୍ଷାଋତୁରେ,

"ଘୋର ବର୍ଷାଦିନେ ଉଚ୍ଚ ଆକାଶରେ
ଗଜା ବଉଦର ଶୋଭା
ପର୍ବତ ଶିଖରେ ଧୂମାଳିଆ ମେଘ
ଦିଶେ ଅତି ମନଲୋଭା ।

× × × ×

ଘଡ଼ଘଡ଼ ଶୁଣି କାଙ୍କଣ ହାଣ୍ଡିରୁ
କାଙ୍କଣ ମାରଇ ଗଜା
ସଳଖ ବାଡ଼ିକୁ ମଡ଼ାଏ କୃଷକ-
ଘରଣୀ ଦେଇଣ ରଞ୍ଜା ।
ଫଳଇ ଏକାଳେ କେଉଁଆ, ପିଜୁଳି
ପିଆଳ, ଆତ, କାକୁଡ଼

ବୋଇଲି କଖାରୁ, ବରଗଡ଼ା ଛୁଇଁ,
ରଙ୍ଗା ପୀଡ଼ା ଯାଏ ବୁଡ଼ି ।
ପୀଡ଼ା ବାଡ଼େ ଫୁଟେ ଲେମ୍ବୁ ଜହ୍ନି ଫୁଲ
ତୋରା ହଳଦିଆ ବନ ।
ଦିଶଇ ଯେସନ ତାରା-ବିମଣ୍ଡିତ
ଶାରଦ ନୀଳ ଗଗନ ।"

ଏହିପରି ବିଭିନ୍ନ ଋତୁରେ ପଲ୍ଲୀର ଶୋଭା ଲେଖକ ଚିତ୍ରଣ କରିଛନ୍ତି । ନବବର୍ଷ ଭାବନାରେ କବି ବର୍ଷା କାଳରେ ପଲ୍ଲୀ ପ୍ରକୃତିର ଗୋଟିଏ ବିଶେଷ ରୂପ ପ୍ରଦାନ କରିଅଛନ୍ତି । ପର୍ବତ ଶିଖରରେ ମେଘଖଣ୍ଡ ଦେଖି ଶିଶୁ ଦୌଡ଼ି ଘରକୁ ଗୁଳିଆସିବା ସମୟରେ ମେଘ ଶିଶୁକୁ ପଛରେ ପକାଇ ପାଣିରେ ଭିଜାଇଦିଏ । ପଲ୍ଲୀ ଘରର ଓଳିତଳେ ପାଣି ପଡ଼ିବା ସମୟରେ ପାଣି ଫୋଟକାକୁ ଚାହିଁ ଚାହିଁ ଶିଶୁ ବସିଥାଏ । ପ୍ରଭାତ ସମୟରେ ଦଳ ଦଳ ହୋଇ ପଲ୍ଲୀ ବଧୂଗଣ ସ୍ନାନ କରିବା ନିମିତ୍ତ ନଦୀ ଆଡ଼କୁ ଅଗ୍ରସର ହୁଅନ୍ତି । ହୁଙ୍କା ଓ ବିଲରେ ଗ୍ଲେଟ ଗ୍ଲେଟ ପିଲାମାନେ ଛତୁ ତୋଳୁଥାନ୍ତି । ତୋଟାର ବେତବଣରେ ଶୁଆ ଶାରୀ ବସି ଆନନ୍ଦରେ ରାବୁଥାନ୍ତି । ପାଚିଲା ଫଳର ମହୋତ୍ସବ ଭିତରେ କାକମାନେ ଆନନ୍ଦରେ କଳରୋଳ କରୁଥାନ୍ତି । ପଲ୍ଲୀର ଉପବନରେ କାଇଞ୍ଚଲତା ମାଡ଼ିଥିବା ସାହାଡ଼ାଗଛ ମୂଳେ ଶିଶୁମାନେ କ୍ରୀଡ଼ାରତ ଥାନ୍ତି । ଏହିପରି ପ୍ରଭାତର ବିଭିନ୍ନ ଦୃଶ୍ୟ ଦେଇ ସନ୍ଧ୍ୟା ସମୟର ଦୃଶ୍ୟ ଦେଇଛନ୍ତି । ପଲ୍ଲୀର ବେଷ୍ଟନୀ ଭିତରେ ଚତୁର୍ଦ୍ଦଶୀ ସନ୍ଧ୍ୟାର ସୁମଧୁର ଅନୁଭୂତି କବିଙ୍କ ରଚନାରୁ ପାଠ କଲାବେଳେ ପ୍ରତ୍ୟେକ ପାଠକର ପ୍ରାଣରେ ଅଶୀତ ଉର୍ମିମାଳା ଉଠେ । କବି ଲେଖିଛନ୍ତି—

"ପଶ୍ଚିମ ଗଗନେ ଅସ୍ତ ଯାଉଥିଲା
ନୀରବ ଭାବରେ ଭାନୁ,
ଓହ୍ଲାଇ ଆକାଶୁଁ ଢାଙ୍କିଥିଲା ମେଘ
ଅଭ୍ରଭେଦ ଗିରି-ସାନୁ ।
ପଲ୍ଲୀ-ବଧୂଗଣ ନୀର-ଆହରଣେ
ଯେଉଁ ଯାଉଥିଲେ ଘରା,
କୁଉଁ କୁଉଁ କୁଉଁ ଡାକିଲା କେନ୍ଦରା
ନାଥ ଭିକ୍ଷାମାଗେ ପରା
ମିଟିମିଟି ଆଖି ନୂଆ ବୋହୂଟିଏ
ସଜାଡ଼ୁଥିଲା ଜାଲଣି,
ବାଡ଼ ଜହ୍ନାଡ଼ରୁ କୁଆ ମଇତାଟି
ଡୋକୁଥିଲା ତା ସଙ୍ଗିନୀ ।
ଡାଳ ବାହୁଙ୍ଗାରେ ଲୁଚି କୁମ୍ଭାଟୁଆ
ରାବୁଥିଲା ହୁଉଁ ହୁଉଁ,
ଝିପି ଝିପି ମେଘ ବରଷି ଆସିଲା
ଦେଖୁଁ ଦେଖୁଁ ଦୁମ୍‌ଦୁମୁ ।"

ଏହିପରି ଭାବରେ ତାଙ୍କର କବିତା ଗୁଡ଼ିକରେ ପ୍ରକୃତି ନିଜନାସ୍ତି ଭାବରେ ପ୍ରକାଶ ପାଇଛି । ଓଡ଼ିଆ ଜୀବନର ଅତି ସାଧାରଣ ଚିତ୍ର ପ୍ରକୃତି ମାଧ୍ୟମରେ ମଧ୍ୟ ବର୍ଣ୍ଣିତ ହୋଇଛି । ଦୂର ପ୍ରବାସୀ ପ୍ରିୟର ଆଗମନକୁ ଅପେକ୍ଷା କରି ବିରହିଣୀ ପଲ୍ଲୀବଧୂ ଯେପରି ଦିନ କାଟୁଥାଏ, ଯେତେବେଳେ ଅଗଣାରେ କାଉଟିଏ ରାବିଲେ ପଲ୍ଲୀବଧୂ ତଣ୍ଡୁଳ ଦେଇ ପତି ଆଗମନର ବାର୍ତ୍ତା ପ୍ରଶ୍ନକରେ । ଏ ଚିତ୍ରଟି ଆମର ସାମାଜିକ ଜୀବନରେ ବିଶେଷତଃ ପଲ୍ଲୀରେ ଏତେ ସହଜ ଯେ, ଏହାକୁ ଅନ୍ୟ କୌଣସି କବି କବିତାରେ ସ୍ଥାନ

ଦେବାକୁ ଉଚିତ ମନେ ନ କଲେ ହେଁ ନନ୍ଦକିଶୋର ଏହିପରି ଅନେକ ଚିତ୍ର କବିତାରେ ପରିବେଷଣ କରିଅଛନ୍ତି । ପ୍ରକୃତି ଚିତ୍ର ଭିତରେ ବର୍ଷାର ଚିତ୍ର ଅଧିକ ସ୍ଥାନରେ ଦେଖାଯାଏ ।

ତାଙ୍କର ଶର୍ମିଷ୍ଠା କାବ୍ୟରେ ପ୍ରକୃତିର ଆତ୍ମପ୍ରକାଶ ଯଥେଷ୍ଟ ଭାବରେ ହୋଇଅଛି । ଯଯାତି ବନକୁ ଶିକାର କରି ଯିବା ସମୟରେ ଉପବନ-ପ୍ରକୃତିର ରମଣୀୟତା ଯଯାତିଙ୍କର ମନୋ-ରାଜ୍ୟରେ ଏକ ମିଳନାତ୍ମକ ପରିବେଶର ସୃଷ୍ଟି କରିଅଛି । ଉପବନ ଶୋଭା ବର୍ଣ୍ଣନା ଏତେ ପ୍ରାଞ୍ଜଳ ଯେ, ବୃକ୍ଷ ଲତାଠାରୁ ଆରମ୍ଭ କରି ପଶୁ ପକ୍ଷୀ ପର୍ଯ୍ୟନ୍ତ ପ୍ରତ୍ୟେକର ବର୍ଣ୍ଣନା କାବ୍ୟର ଉପକ୍ରମକୁ ମଂଜୁଳ କରିଅଛି । କାବ୍ୟର କଥାବସ୍ତୁ ସହିତ ବିଭିନ୍ନ ଋତୁଚକ୍ରର ବର୍ଣ୍ଣନା ଦିଆଯାଇଛି । ୧ମ ସର୍ଗରେ ବସନ୍ତ ଋତୁର ବର୍ଣ୍ଣନା, ୪ର୍ଥ ସର୍ଗରେ ରଜନିର ବର୍ଣ୍ଣନା, ୫ମ ସର୍ଗରେ ବର୍ଷାଋତୁର ବର୍ଣ୍ଣନା ଓ ୮ମ ସର୍ଗରେ ଶାରଦୀୟ ଶୋଭାର ବର୍ଣ୍ଣନା କବିଙ୍କ ଲେଖନୀରେ ସରସ ଭାବରେ ପ୍ରକାଶ ପାଇଛି । ୪ର୍ଥ ସର୍ଗରେ ରଜନି ବର୍ଣ୍ଣନାରେ କବି ଲେଖିଛନ୍ତି—

"ଝାଇଁ ଝାଇଁ ଶୁଭେ ନିଶା ଗରଜନ
ଝିଲ୍ଲୀ ରବେ ଝିଇଁ ଝିଇଁ ସ୍ୱରେ
ଶାନ୍ତ ସୁଧା କରେ ସ୍ୱପ୍ନ ଦେବୀ ଆସି
ବନ୍ଦିହୁଅଛନ୍ତି-ବିଶ୍ୱରେ ।
ଊର୍ଦ୍ଧ୍ୱେ ବିହାୟସେ ତାରକାର ବେଶେ
ସୁରେ କି କରନ୍ତି ମେଳ
ଧରିତ୍ରି ବିଭୂଷିତା ନିଦେଶ ଲଳିତା
ଦିବେ ବା କରନ୍ତି କେଳି ?

କୌମୁଦୀ ମଣ୍ଡିତ ଗଗନ ଶୋଭୁଛି
ଯେଣୁ ଗ୍ରହ ଋକ୍ଷ ଇନ୍ଦୁ
ସ୍ୱର୍ଲୋକର କି ସେ ରତନ ପୂରିତ
ସୁନିର୍ମଳ ସୁଧାସିନ୍ଧୁ ।"

କେବଳ କାବ୍ୟକବିତା ନୁହେଁ, ନନ୍ଦକିଶୋରଙ୍କ ଉପନ୍ୟାସ କନକଲତାରେ ମଧ୍ୟ କବିଙ୍କ ପ୍ରକୃତି ପ୍ରେମ ପ୍ରବଣତା ଯଥେଷ୍ଟ ଭାବରେ ପ୍ରକାଶ ପାଇଛି । କନକଲତା ଉପନ୍ୟାସର ଆରମ୍ଭରେ ପ୍ରକୃତି ଚିତ୍ରିତ । ଶୀତ କାଳର ପ୍ରଭାତରେ ପଲ୍ଲୀର ଗୋଟିଏ ମନୋରମ ଦୃଶ୍ୟ ଭିତରେ ଉପନ୍ୟାସର ଆରମ୍ଭ ହୋଇଛି । ରାଜେନ୍ଦ୍ରଙ୍କ ଗ୍ରାମକୁ ଧନଞ୍ଜୟ ଦଶହରା ଉପଲକ୍ଷେ ଆସିଥିବା ସମୟରେ ଗ୍ରାମର ପ୍ରାକୃତିକ ଶୋଭା କବି ବର୍ଣ୍ଣନା କରିଅଛନ୍ତି । ଏହି ବର୍ଣ୍ଣନା ପାଠ କଲେ ପାଠକ ସମ୍ମୁଖରେ ପ୍ରାକୃତିକ ଶୋଭା ସମ୍ପନ୍ନ ଏକ ପଲ୍ଲୀର ସୁନ୍ଦର ଚିତ୍ର ପ୍ରତିଭାତ ହୁଏ । କନକଲତା ଉପନ୍ୟାସର ସମଗ୍ର କଳେବର ଭିତରେ ପ୍ରକୃତି ଉତ୍ତମ ଭାବରେ ରୂପାୟିତ ।

ଓଡ଼ିଆ ସାହିତ୍ୟର ଆଧୁନିକ ଯୁଗରେ ପ୍ରକୃତି କବିତାର ରାଧାନାଥଙ୍କ ହାତରେ ଯେଉଁ ନୂତନ ରୂପରେଖ ନେଇଥିଲା, ତାହା ତାଙ୍କର ସମସାମୟିକ ଓ ପରବର୍ତ୍ତୀ କବିମାନଙ୍କ ଦ୍ୱାରା ଅନୁସୃତ ହୋଇଅଛି । ଗଙ୍ଗାଧର ମେହେରେ ରାଧାନାଥଙ୍କୁ ଅନୁସରଣ କରି ପ୍ରକୃତିକୁ ସବିସ୍ତାର ଭାବରେ ବର୍ଣ୍ଣନା କରିଅଛନ୍ତି । ନନ୍ଦକିଶୋରଙ୍କ କାବ୍ୟ କବିତା ଓ ଉପନ୍ୟାସ ଭିତରେ ପ୍ରକୃତି ମୁଖ୍ୟ ଭାବରେ ସନ୍ନିବିଷ୍ଟ ଅଂଶ ଗ୍ରହଣ ନ କଲେ ହେଁ ପ୍ରକୃତିର ମନୋରମ ବିକାଶ ସାଧିତ ହୋଇଅଛି । ସୌନ୍ଦର୍ଯ୍ୟବାଦୀ କବି ନନ୍ଦକିଶୋର ପ୍ରକୃତିର

ବେଷ୍ଟନୀ ଭିତରେ ସୌନ୍ଦର୍ଯ୍ୟର ଆଧାରକୁ ଖୋଜି ବାହାର କରି ଅଛନ୍ତି । ନନ୍ଦକିଶୋରଙ୍କର ପ୍ରକୃତିର ସ୍ୱାତନ୍ତ୍ର୍ୟ ହିଁ ସୌନ୍ଦର୍ଯ୍ୟ ପ୍ରତିପାଦନ । ପ୍ରକୃତିର ଏହି ସୌନ୍ଦର୍ଯ୍ୟ ପ୍ରତିପାଦନ ନିମିତ୍ତ କାବ୍ୟ ପ୍ରସିଦ୍ଧ କୌଣସି ନଦ ନଦୀ ବନ ପର୍ବତକୁ ଅନୁସରଣ ନ କରି ପଲ୍ଲୀର ସରଳ ଅବସ୍ଥିତି ଭିତରେ ଯାହା ସେ ଦେଖିବାକୁ ପାଇଛନ୍ତି, ତହିଁରୁ ସୌନ୍ଦର୍ଯ୍ୟ ଆହରଣ କରିଅଛନ୍ତି ।

**ନନ୍ଦକିଶୋରଙ୍କ ସୃଷ୍ଟିରେ ଚରିତ୍ର ଚିତ୍ରଣ—** ନନ୍ଦକିଶୋରଙ୍କ ଲିଖିତ କବିତା ଗୁଡ଼ିକରୁ ପାଠକ ଅନେକ ପ୍ରକାର ଚରିତ୍ରର ପରିଚୟ ପାଇଲେ ହେଁ ସେଗୁଡ଼ିକରେ ଚରିତ୍ର ଚିତ୍ରଣର ପାରଦର୍ଶିତା ପରିଦୃଷ୍ଟ ହୁଏ । 'ସୀତା ବନବାସ' କାବ୍ୟରେ ସୀତାଙ୍କର ଚରିତ୍ରଚିତ୍ରଣରେ ଯେଉଁ ଭାରତୀୟ ଆଦର୍ଶ ରକ୍ଷିତ ହେବାର କଥା, ତାହା ହୋଇଛି । ସତୀ, ସାଧ୍ୱୀ ସୀତାଙ୍କର ଜୀବନର ଆଦର୍ଶ ଭାରତୀୟ କବି ଓ ଲେଖକଙ୍କ ହାତରେ ଯଥେଷ୍ଟ ଭାବରେ ରୂପାୟିତ ହୋଇସାରିଛି । କବି ନନ୍ଦକିଶୋର ସୀତାଙ୍କ ଜୀବନର ଯେଉଁ ଚିତ୍ର ଏଠାରେ ଅଙ୍କନ କରିଛନ୍ତି, ତାହା ପୂର୍ବବର୍ତ୍ତୀ କବି ବା ଲେଖକମାନଙ୍କର ଆଦର୍ଶରେ ଅନୁପ୍ରାଣିତ । କୃଷ୍ଣକୁମାରୀ କାବ୍ୟରେ ରଣାଭୀମ ସିଂହ, ମାନସିଂହ ଏବଂ କୃଷ୍ଣକୁମାରୀ ପ୍ରମୁଖଙ୍କ ଚରିତ୍ର ଉତ୍ତମ ରୂପେ ଚିତ୍ରିତ ହୋଇ ପାରିଅଛି । ରାଜପୁତ ଜାତିର ବୀରତ୍ୱପୂର୍ଣ୍ଣ ଗାଥା ହିଁ କାବ୍ୟରେ ପ୍ରକାଶିତ । ତେଣୁ ଏହି କାବ୍ୟର ନାୟକ ନାୟିକାଙ୍କ ଚରିତ୍ରରେ ରାଜପୁତ ଜାତିର ଆଦର୍ଶ ଯେପରି ଭାବରେ ରକ୍ଷିତ ହୋଇପାରିଛି, ତାହା ଦେଖିବାର କଥା । ମାନସିଂହ ମୋଗଲ ଅଧୀନରେ ଥିବାରୁ କୃଷ୍ଣକୁମାରୀ ତାଙ୍କୁ ପତିରୂପେ ବରଣ କରିବାପାଇଁ ଉଚିତ ମନେ କରି ନାହାନ୍ତି । ଯୁଦ୍ଧରେ ଯେତେବେଳେ ରାଜପୁତ ଜାତି ପରାଜୟ ସ୍ୱୀକାର କଲା, ସେତେବେଳେ କୃଷ୍ଣକୁମାରୀ-

ଙ୍କର ଜଦର ବ୍ରତ ପାଳନରେ ରାଜପୁତ ଜାତିର ପରାକାଷ୍ଠା ପ୍ରକାଶ ପାଇଛି । ତେଣୁ କାବ୍ୟର ନାୟିକା କୃଷ୍ଣକୁମାରୀଙ୍କ ଚରିତ୍ର ଚିତ୍ରଣରେ କବି ସିଦ୍ଧହସ୍ତତା ପ୍ରଦର୍ଶନ କରିଅଛନ୍ତି ।

ଶର୍ମିଷ୍ଠା କାବ୍ୟରେ ଶୁକ୍ରାଚାର୍ଯ୍ୟ, ବୃଷପର୍ବା, ଯଯାତି, ଦେବଯାନୀ ଓ ଶର୍ମିଷ୍ଠାଙ୍କର ଚରିତ୍ର ଅତି ନିପୁଣ ଭାବରେ କବି ଚିତ୍ରଣ କରିଅଛନ୍ତି । ମୃତ୍ୟୁ-ସଞ୍ଜୀବନୀ-ମନ୍ତ୍ରସିଦ୍ଧ ଶୁକ୍ରାଚାର୍ଯ୍ୟ ନିଜ କନ୍ୟାକୁ କ୍ଷମାର ମହତ୍ତ୍ୱ ବିଷୟ ବୁଝାଇଲାବେଳେ ତାଙ୍କ ଚରିତ୍ରର ମହନୀୟତା ପ୍ରକାଶ ପାଇଅଛି । ଦେବଯାନୀଙ୍କୁ ବିବାହ କରିବା ନିମିତ୍ତ ଯଯାତିଙ୍କୁ ସମ୍ବାଦ ପ୍ରେରଣ କରିବାରେ ଆର୍ଯ୍ୟେତର ଜାତି ବିଷୟକ ଶାସ୍ତ୍ରସିଦ୍ଧ ଯୁକ୍ତି ପ୍ରଦର୍ଶନରେ ମଧ୍ୟ ଶୁକ୍ରାଚାର୍ଯ୍ୟ ଚରିତ୍ରର ପାଣ୍ଡିତ୍ୟ ପ୍ରକାଶ ପାଇବା ସଙ୍ଗେ ସଙ୍ଗେ ଶୁକ୍ରାଚାର୍ଯ୍ୟଙ୍କର ସାମାଜିକ ଜୀବନପ୍ରତି ଦୃଷ୍ଟିକୋଣ ପ୍ରକାଶ ପାଇଛି । ଅସୁରରାଜ ବୃଷପର୍ବା ଦେବଯାନୀଙ୍କ ନିକଟରେ ଶର୍ମିଷ୍ଠାଙ୍କୁ କ୍ଷମା କରିବା ନିମନ୍ତେ ଅନୁରୋଧ କରିବା ସମୟରେ ତାଙ୍କ ଚରିତ୍ରର ଗୋଟିଏ ଦିଗ ପ୍ରକାଶ ପାଇଛି । ଶର୍ମିଷ୍ଠାଙ୍କୁ କ୍ଷମା କରିବା ନିମିତ୍ତ ଦେବଯାନୀଙ୍କର ସର୍ତ୍ତରେ ସେ ବିଚଳିତ ହୋଇ ନାହାନ୍ତି । କାରଣ ନିଜ ରାଜ୍ୟର, ନିଜ ଗୋଷ୍ଠୀର ମଙ୍ଗଳ ନିମନ୍ତେ ଦେବଯାନୀ ଓ ଶୁକ୍ରାଚାର୍ଯ୍ୟଙ୍କୁ ସନ୍ତୁଷ୍ଟ କରିବା ତାଙ୍କ ପକ୍ଷରେ ଏକାନ୍ତ ବିଧେୟ । ଯଯାତିଙ୍କର ଚରିତ୍ର ଚିତ୍ରଣରେ କବି ଜଣେ ଆଦର୍ଶ ଶାସକ ଓ ପ୍ରେମିକର ଚିତ୍ର ଦେଇଥିଲେ ହେଁ ବାସ୍ତବରେ କବିଙ୍କ ଲେଖନୀରେ ଯଯାତିଙ୍କର ଶାସକତ୍ୱ ଅପେକ୍ଷା ପ୍ରେମିକତ୍ୱ ଅଧିକତର ଭାବରେ ପ୍ରକାଶ ଲାଭ କରିଅଛି । ଦେବଯାନୀ ଚରିତ୍ର ଏକ ଅଦ୍ଭୁତ ସୃଷ୍ଟି । ଜଳକେଳି ସମୟରେ ନିଜର ବସ୍ତ୍ରର ସ୍ଥାନ ପରିବର୍ତ୍ତନ ଯୋଗୁଁ ଜଳକେଳି ପରେ ପରିହିତ ବସ୍ତ୍ରର ପରିବର୍ତ୍ତନ ଦେଖି ଶର୍ମିଷ୍ଠାଙ୍କର ରାଗ ହେଲା । ଦାସୀକର୍ତ୍ତୃକ ଦେବଯାନୀ

କୂପ ମଧ୍ୟରେ ପଡ଼ିଲେ । ଯଯାତି ତାଙ୍କୁ କୂପରୁ ଉଦ୍ଧାର କରିବାପରେ ଦେବଯାନୀଙ୍କର କୋପ ସୀମା ଅତିକ୍ରମ କରିଛି । ପିତା ଶୁକ୍ରାଚାର୍ଯ୍ୟ ପଣ୍ଡ ଶର୍ମିଷ୍ଠାଙ୍କୁ କ୍ଷମା କରିବା ନିମନ୍ତେ ଯେତେ ବୁଝାଇଲେ ହେଁ ସେ ବୁଝି ନାହାନ୍ତି ଏବଂ ଶର୍ମିଷ୍ଠାଙ୍କ ପାଇଁ ସେ ଏକ ନିଷ୍ଠୁର ସର୍ତ୍ତ ରଖିଛନ୍ତି । ସମଗ୍ର କାବ୍ୟର କଳେବର ଭିତରେ ଯଯାତି ଚରିତ୍ର ଯେପରି କେବଳ ନିମନ୍ତେ ଚରିତ୍ରରୂପେ ମୁଖ୍ୟ ଭାବରେ ଚିତ୍ରିତ, ଠିକ୍ ସେହିପରି ଦେବଯାନୀ ଚରିତ୍ର ଏକ ପ୍ରେମିକା ଚରିତ୍ରରୂପେ ଚିତ୍ରିତ । ଶର୍ମିଷ୍ଠା ଚରିତ୍ରରେ ଲେଖକ ଯେଉଁ ଉଚ୍ଚ ଆଦର୍ଶ-ବାଦର ସୂଚନା ଦେଇଛନ୍ତି ତାହା ବାସ୍ତବରେ ହୃଦୟସ୍ପର୍ଶୀ । ନିଜର ପିତାଙ୍କ ଲାଗି, ରାଜ୍ୟଲାଗି, ରାଜ୍ୟବାସୀଙ୍କ ଲାଗି ଶର୍ମିଷ୍ଠା ନିଜର ଯୌବନସୁଲଭ ସମସ୍ତ ବିଳାସିତାକୁ ବର୍ଜନ କରି ସାରା ଜୀବନ ଦେବଯାନୀଙ୍କର ଦାସୀରୂପେ ଅତିବାହିତ କରିବାର ସଂକଳ୍ପ ତାଙ୍କର ଆତ୍ମ ବଳିଦାନର ଏକ ଜ୍ୱଳନ୍ତ ନିଦର୍ଶନ । ଶର୍ମିଷ୍ଠା ଚରିତ୍ରର ମହନୀୟତାରେ କାବ୍ୟର କଥାବସ୍ତୁ ଓ ରସ ସୌନ୍ଦର୍ଯ୍ୟର ଅଭିବୃଦ୍ଧି ନନ୍ଦକିଶୋରଙ୍କ ଲେଖନୀରେ ଏକ ଅପୂର୍ବ ସୌନ୍ଦର୍ଯ୍ୟ ଲାଭ କରିଅଛି ।

କେବଳ କାବ୍ୟ ନୁହେଁ, ନନ୍ଦକିଶୋରଙ୍କର ଗଳ୍ପ ଉପନ୍ୟାସରେ ଚରିତ୍ର ଚିତ୍ରଣର ସ୍ୱାଭାବିକତା ପରିଲକ୍ଷିତ ହୁଏ । ତାଙ୍କର କନକଲତା ଉପନ୍ୟାସରେ ଥିବା ପ୍ରତ୍ୟେକଟି ଚରିତ୍ରକୁ ଲକ୍ଷ୍ୟ କରିବାର କଥା । ହରିଚନ୍ଦନ ଓ ପାଇକରାୟ ଏହି ଦୁଇ ସମ୍ଭ୍ରାନ୍ତ ବଂଶର ସଂପର୍କକୁ କେନ୍ଦ୍ରକରି କନକଲତା ଉପନ୍ୟାସର କଥାବସ୍ତୁ ଗଢ଼ିଉଠିଛି । ବଜ୍ରଧର ହରିଚନ୍ଦନଙ୍କ ଚରିତ୍ର ସେ ସମୟର ସାମାଜିକ ପରିବେଶରେ ଯେତିକି ବାସ୍ତବ, ଇନ୍ଦ୍ରଜିତ ପାଇକରାୟଙ୍କ ଚରିତ୍ର ସେତିକି ବାସ୍ତବ । ଆଧୁନିକ ଶିକ୍ଷାଭିମାନୀ ରାଜେନ୍ଦ୍ରର ଚରିତ୍ରରେ

ଲେଖକ ଅନେକ ସଂସ୍କାରମୂଳକ ମନୋବୃତ୍ତିର ପରିଚୟ ଦେଇଛନ୍ତି । ସମାଜର ଅଯଥା କୁସଂସ୍କାରରେ ରାଜେନ୍ଦ୍ର ବିଶ୍ୱାସ କରେ ନାହିଁ । ଠିକ୍ ସେହିପରି ଧନଞ୍ଜୟ ଚରିତ୍ର ଧନଞ୍ଜୟ ଆଧୁନିକ ଶିକ୍ଷାଭିମାନୀ । ମାତ୍ର ରାଜେନ୍ଦ୍ରଙ୍କ ପରି ଏତେ ଦୂର ସଂସ୍କାରପ୍ରୟାସୀ ସେ ନୁହେଁ । ଶୁଣାଯାଏ ରାଜେନ୍ଦ୍ର ଚରିତ୍ର ଜରିଆରେ ନନ୍ଦକିଶୋର ନିଜର ବ୍ୟକ୍ତିଗତ ଚରିତ୍ରର ପ୍ରକାଶ କରିଅଛନ୍ତି । କନକଲତା ଚରିତ୍ରରେ ଲେଖକ ଗୋଟିଏ ସମ୍ଭ୍ରାନ୍ତ ବଂଶୀୟା ଯୁବତୀର ଚିତ୍ର ଦେବାକୁ ସମର୍ଥ ହୋଇଛନ୍ତି । କନକଲତା ଓ ରାଜେନ୍ଦ୍ରଙ୍କର ପରିଚୟ ବ୍ୟାପାରରେ ଯେଉଁ ବର୍ଣ୍ଣନା ଗୁଡ଼ିକ ଲେଖକ ଦେଇଛନ୍ତି ସେଥିରୁ ମନେହୁଏ, ସତେ ଯେପରି କନକଲତା କାବ୍ୟଯୁଗର ଜଣେ ବିଶିଷ୍ଟ ନାୟିକା । ଏହି ଉପନ୍ୟାସରେ ଗୌଣ ଚରିତ୍ର-ମାନଙ୍କର ବିକାଶ ମଧ୍ୟ ସମ୍ଭବ ହୋଇପାରିଛି । ଫକୀରମୋହନଙ୍କ ଉପନ୍ୟାସରେ ଗୌଣ ଚରିତ୍ରମାନଙ୍କର ବିକାଶ ନିମନ୍ତେ ଫକୀର ମୋହନ ଯେପରି ପନ୍ଥାର ଆଶ୍ରୟ ନେଇଛନ୍ତି, ନନ୍ଦକିଶୋର ଏଠାରେ ଅନେକାଂଶରେ ସେହି ପନ୍ଥା ଗ୍ରହଣ କରିଅଛନ୍ତି ।

ଏକ ସତ୍ୟମୂଳକ ଘଟଣାକୁ ନେଇ ନନ୍ଦ କିଶୋର ଲକ୍ଷ୍ମୀ ଗଳ୍ପ ଲେଖି ଅଛନ୍ତି । ତତ୍କାଳୀନ ସମାଜରେ ପ୍ରଚଳିତ ଥିବା 'କନ୍ୟାସୁନା' ବିରୁଦ୍ଧରେ ଏ ଗଳ୍ପଟି ଲେଖା ଯାଇଥିଲା । ଧର୍ମ ମିଶ୍ର ନିଜର କନ୍ୟା ନିମିତ୍ତ ୧୫୦୦ଟଙ୍କା ଧାର୍ଯ୍ୟ କରିବାରୁ ସେ କାଳର ସମାଜରେ ପିତା ହିସାବରେ ଧର୍ମ ମିଶ୍ରଙ୍କ ଚରିତ୍ରର ଗୋଟିଏ ଦିଗ ଦେଖାଯାଏ । ନାରାୟଣ ୧୫୦୦ଟଙ୍କା ଦେବା ଅବସ୍ଥାରେ ନ ଥିବାରୁ ଭଦ୍ରବ୍ୟକ୍ତିମାନଙ୍କର ନିର୍ଦ୍ଦେଶ ଅନୁସାରେ ୭୦୦ଟଙ୍କା ଦେଇ ଲକ୍ଷ୍ମୀକୁ ବିବାହ କରିଅଛି । ନାରାୟଣ ଚରିତ୍ରର ଯଥୋଚିତ ବିକାଶ ନିମିତ୍ତ କୌଣସି ଉପାଦାନ ନାହିଁ । ମାତ୍ର ଲକ୍ଷ୍ମୀ ଚରିତ୍ରର

ବିକାଶ ନିମିତ୍ତ ଲେଖକ ଯଥେଷ୍ଟ ଉପାଦାନ ଦେଇଛନ୍ତି । ଲକ୍ଷ୍ମୀକୁ ବିବାହ କରିବା ନିମିତ୍ତ ନାରାୟଣ ଧର୍ମ ମିଶ୍ରକୁ ଦେଇଥିବା ଟଙ୍କାତକ ଲକ୍ଷ୍ମୀ ଶ୍ୱଶୁରାଳୟକୁ ଯିବା ସମୟରେ ସଙ୍ଗରେ ନେଇଯାଇଛି ଏବଂ ନାରାୟଣଙ୍କୁ ଫେରାଇ ଦେଇଛି । ଲକ୍ଷ୍ମୀର ସଂସ୍କାର ମୂଳକ ମନୋବୃତ୍ତି ଏ ଗଳ୍ପରୁ ପ୍ରତିପନ୍ନ ହୁଏ ।

କାବ୍ୟ ଅପେକ୍ଷା ନନ୍ଦକିଶୋରଙ୍କର ଉପନ୍ୟାସରେ ଓ ଗଳ୍ପରେ ଚରିତ୍ର ଚିତ୍ରଣ ପ୍ରତି ତାଙ୍କର ସଚେତନତା ଅଧିକ ମାତ୍ରାରେ ପରିଲକ୍ଷିତ ହୁଏ । କନକଲତା ଉପନ୍ୟାସର ପ୍ରତ୍ୟେକ ଚରିତ୍ର ଏହାର ମୂକସାକ୍ଷୀ ।

**ନନ୍ଦକିଶୋରଙ୍କ ରଚନାରେ ଘଟଣା ବିନ୍ୟାସ:—**

ଘଟଣାବହୁଳ ଆଧୁନିକ ଜୀବନର ଆଧୁନିକ ପରିବେଶକୁ ଦୃଷ୍ଟି ସମକ୍ଷରେ ନ ରଖି ପଲ୍ଲୀ ଜୀବନର ସ୍ୱାଭାବିକ ଘଟଣା-ପ୍ରବାହ ପ୍ରତି ନନ୍ଦକିଶୋରଙ୍କର କବି ହୃଦୟ ଆକୃଷ୍ଟ ହୋଇଅଛି । ତାଙ୍କର ପଲ୍ଲୀକବିତା ଗୁଡ଼ିକରେ ପଲ୍ଲୀର ସୁଖ ଦୁଃଖ, ଭଲ ମନ୍ଦ, ପର୍ବପର୍ବାଣି ପ୍ରଭୃତି ଅନେକ ବିଶିଷ୍ଟ ଘଟଣାର ବର୍ଣ୍ଣନା ଜୀବନ୍ତ ଭାବରେ ସ୍ଥାନ ପାଇଅଛି । ଅନେକ ସ୍ଥଳରେ ଏହି ଘଟଣାଗୁଡ଼ିକରେ ଥିବା କୁସଂସ୍କାର ପ୍ରତି କବି ଆକ୍ଷେପ କରିଛନ୍ତି । ପଲ୍ଲୀର କୃଷକ ସକାଳୁ ବିଲକୁ ଯାଏ । କାମ ଧନ୍ଦା ସାରି ବିଲରୁ ଫେରିଆସେ । ପଲ୍ଲୀର ଧେନୁପଲ ଗୋଧୂଳି ସମୟରେ ହମ୍ବାରଡ଼ି ଦେଇ ଫେରୁଥିବା ବେଳେ ଗାଁ ଦାଣ୍ଡକୁ କଂପାଇ ଦିଅନ୍ତି, ପଲ୍ଲୀର ସୀମନ୍ତିନୀ ଗଣ ସ୍ନାନ ନିମନ୍ତେ ପ୍ରତ୍ୟୁଷରେ ନଈତଟକୁ ଅଗ୍ରସର ହୁଅନ୍ତି । ପଲ୍ଲୀର ଗୃହ ସମ୍ମୁଖରେ ଭିକ୍ଷାର୍ଥୀ ନାଥ କେନ୍ଦରା ବଜାଇ ଗୀତ ବୋଲେ, ସନ୍ଧ୍ୟାରେ ପଲ୍ଲୀର ଭାଗବତ ଟୁଙ୍ଗିରେ ପୁରାଣ ପାଠର ଆସର ଜମିଉଠେ । ଏହିପରି ନିତ୍ୟ

ସଂଘଟିତ ପଲ୍ଲୀ ଜୀବନର ଅଶେଷ ଘଟଣାରେ ନୂତନତ୍ୱ ନ ଥିଲେ ହେଁ ସାହିତ୍ୟରେ ଏଗୁଡ଼ିକର ରୂପାୟନ ଯେ ଯଥେଷ୍ଟ ନୂତନତ୍ୱ ଆଣି ପାରିଛି ଏଥିରେ ସନ୍ଦେହ ନାହିଁ । ସାଧାରଣତଃ ଯେଉଁ ଘଟଣା ଗୁଡ଼ିକ କବି ଚକ୍ଷୁରେ ହେୟ, /ନଗଣ୍ୟ, ସେଗୁଡ଼ିକ କବିତା ବା କାବ୍ୟ ଭିତରେ କବି ଦେଇ ନ ଥାଏ । ମାତ୍ର ପଲ୍ଲୀକବି ନନ୍ଦକିଶୋର ଅନ୍ୟ କବିମାନଙ୍କ ଚକ୍ଷୁରେ ଯେଉଁ ଘଟଣାଗୁଡ଼ିକ ହେୟ, ନଗଣ୍ୟ ସେଗୁଡ଼ିକ ଅତି ନିପୁଣତାର ସହିତ ଚିତ୍ରଣ କରି ଅଛନ୍ତି । ତାଙ୍କ କାବ୍ୟରେ କଥାବସ୍ତୁର ବଳିଷ୍ଠତା ଘଟଣା ବିନ୍ୟାସ ଯୋଗୁଁ ପ୍ରକାଶ ପାଇଛି । ଶର୍ମିଷ୍ଠା କାବ୍ୟରେ ଶର୍ମିଷ୍ଠା ଓ ଦେବଯାନୀଙ୍କର ବସ୍ତ୍ର ପରିବର୍ତ୍ତନ ଘଟଣା ସମଗ୍ର କାବ୍ୟର କଥାବସ୍ତୁକୁ ପରିଚାଳିତ କରିଛି । ସେହିପରି ଦେବଯାନୀଙ୍କୁ ଯଯାତି କୂପରୁ ଉଦ୍ଧାର କରିବା ଘଟଣାରେ ଯଯାତି ଓ ଦେବଯାନୀଙ୍କର ପରିଣୟଗତ ଅଗ୍ରଗତି ପରିଚାଳିତ ହୋଇଅଛି । କନକଲତା ଉପନ୍ୟାସରେ ଘଟଣା ବହୁଳତା ବିଶେଷ ଭାବରେ ପରିଦୃଷ୍ଟ ହୁଏ । ଉପନ୍ୟାସର ସମଗ୍ର କଳେବର ଭିତରେ ମୁଖ୍ୟ ଚରିତ୍ର ବା ଗୌଣ ଚରିତ୍ର ସଂଯୋଜନାରେ ଯେଉଁ ଘଟଣା ଗୁଡ଼ିକ ଘଟିଯାଇଛି, ସେ ଗୁଡ଼ିକ ପାଠକଲେ ନନ୍ଦକିଶୋରଙ୍କର ସାମାଜିକ ଘଟଣା ପ୍ରବାହ ପ୍ରତି ତୀକ୍ଷ୍ଣ ଦୃଷ୍ଟିର ପରିଚୟ ମିଳେ । ଯୋଗୀଟିଏ ଗୋବିନ୍ଦଚନ୍ଦ୍ର ଗୀତଟିଏ ବୋଲି ଭିକ ମାଗିବା ପଲ୍ଲୀର ଏକ ମାମୁଲି ଘଟଣା; କିନ୍ତୁ ଏହି ମାମୁଲି ଘଟଣା ରାଜେନ୍ଦ୍ରଙ୍କର ଚିନ୍ତାମୂଳକ ମନୋବୃତ୍ତିକୁ ଯଥେଷ୍ଟ ପ୍ରଭାବିତ କରିଛି । ଯୋଗୀର ଗୋବିନ୍ଦଚନ୍ଦ୍ର ଗୀତରୁ ବୌଦ୍ଧ ଦାର୍ଶନିକ ତତ୍ତ୍ୱ ଉପରେ ପ୍ରବନ୍ଧ ଲେଖିବାର କଳ୍ପନା ରାଜେନ୍ଦ୍ରଙ୍କ ମନକୁ ଆସିଛି । ଏହିପରି ଅନେକ କ୍ଷୁଦ୍ର ଘଟଣା ଭିତରେ କବି କନକଲତାର କଥାବସ୍ତୁକୁ ଗଢ଼ିବାର ସୁଯୋଗ ପାଇଛନ୍ତି । କନକଲତା ଉପନ୍ୟାସରେ

କନକଲତାଙ୍କର ଜନ୍ମଦିନ ଉପଲକ୍ଷେ ଆଖଣ୍ଡଲମଣି ଦର୍ଶନ ଘଟଣା କନକଲତାର କଥାବସ୍ତୁକୁ ପ୍ରଭାବିତ ତଥା ପରିଚାଳିତ କରିଅଛି । ଆଖଣ୍ଡଲମଣି ଦର୍ଶନରେ ଧନଞ୍ଜୟ ଓ କନକଲତାଙ୍କର ମିଳନର ପ୍ରଥମ ପର୍ଯ୍ୟାୟ ସୃଷ୍ଟି ହେବା ସଙ୍ଗେ ସଙ୍ଗେ କଥା ବସ୍ତୁର ଅଗ୍ରଗତି ହୋଇଅଛି । ସେହିପରି 'ଲକ୍ଷ୍ମୀ' ଗଳ୍ପ ଆମ ସମାଜର ଏକ ବାସ୍ତବ ସତ୍ୟ ମୂଳକ ଘଟଣା ଉପରେ ରଚିତ । ସମାଜରେ ଯାହା ଘଟି ଯାଉଛି, ସେଥିପ୍ରତି ତୀକ୍ଷ୍ଣ ଦୃଷ୍ଟି ଦେବା ଲେଖକ ବା କବି ପକ୍ଷରେ ଯେ ଏକାନ୍ତ ବିଧେୟ ଏକଥା ଫକୀର ମୋହନ ଯେତିକି ପରିମାଣରେ ପ୍ରମାଣିତ କରିଛନ୍ତି, ନନ୍ଦ କିଶୋର ସେତିକି ପ୍ରମାଣିତ କରିଛନ୍ତି ।

**ନନ୍ଦକିଶୋରଙ୍କର ସାହିତ୍ୟରେ ବାସ୍ତବତା** ପଲ୍ଲୀକବି ନନ୍ଦକିଶୋରଙ୍କର ପଲ୍ଲୀକବିତା ଗୁଡ଼ିକରେ ବାସ୍ତବତାର ସଙ୍କେତ ଯଥେଷ୍ଟ ପରିମାଣରେ ମିଳେ । ପଲ୍ଲୀର ମଧୁର ପ୍ରକୃତି କୋଳରେ ଗୋଧୂଳି ସମୟରେ ପାହାଡ଼ର ମଥାନ ଉପରେ ମେଘ ଖଣ୍ଡେ ଦେଖା-ଦିଏ । ସେଇ ମେଘକୁ ଦେଖି ଦାଣ୍ଡରେ ଖେଳୁଥିବା ଶିଶୁ ଦଉଡ଼ି ପଳାଇ ଆସୁଥିବା ସମୟରେ ସେଇ ମେଘଖଣ୍ଡ ଆକାଶରେ ଭାସି ଆସି ସେଇ ଶିଶୁର ଗତିକୁ ଚପିଯାଏ । ବର୍ଷାକାଳୀନ ରାତିରେ ଚୁଲି ମୁଣ୍ଡରେ ବସି, ଶିଶୁ ମାଆ କୋଳରେ ଶୋଇ କାହାଣୀ ଶୁଣେ । ସେହି କାହାଣୀରେ ମାଆ ଶିଶୁକୁ ଶୁଆଇବା ବେଳେ ଗାଇପକାଏ—

'ମେଘବରଷିଲା ଟପର ଟପର କେଶୁର ମାଇଲା ଗଜା
କେଉଁ ରାଇଜରେ ରହିଲେ ମୋ ରଜା ତେଲଙ୍ଗୀ ବାଇଦ ବଜା ।"

ବର୍ଷା ମୁଖର ପଲ୍ଲୀର ଗୃହ ଉପରୁ ଧୂଆଁ ଉଠିବାର ଦୃଶ୍ୟ ଯେତିକି ସୁନ୍ଦର, ସେତିକି ବାସ୍ତବ । ନନ୍ଦ କିଶୋରଙ୍କର ସୃଷ୍ଟି ପର୍ଯ୍ୟାୟ ଭିତରେ ବର୍ଷାର ଚିତ୍ର ଏପରି ଭାବରେ ପ୍ରକାଶ ପାଇଛି

ସେ କବିଙ୍କୁ ବର୍ଷାର କବି ହିସାବରେ ସ୍ୱାତନ୍ତ୍ର୍ୟ ପ୍ରଦାନ କରିବାକୁ ପାଠକ ଆଗ୍ରହୀ ହୋଇ ପଡ଼େ । ଜୀବନର ସନ୍ଧ୍ୟା ସମୟରେ ଲିଖିତ ସନ୍ଧ୍ୟା ସଙ୍ଗୀତର ବିଭିନ୍ନ କବିତା ଭିତରେ କବି ଜୀବନର ସ୍ମୃତିରୁ କମ୍ ବାସ୍ତବତାର ପରିଚୟ ମିଳେ ନାହିଁ । ବିଭିନ୍ନ ଋତୁଚକ୍ର ଆବର୍ତ୍ତନରେ, ପଲ୍ଲୀର ବିଭିନ୍ନ ଘଟଣା ପ୍ରବାହରେ, ବିଭିନ୍ନ ଦୃଶ୍ୟ ରାଜିରେ କବି ବାସ୍ତବ ଅନୁଭୂତିର ଚିତ୍ର ଦେବାରେ ସମର୍ଥ ହୋଇପାରିଛନ୍ତି । ଯୌବନସୁଲଭ ମାଦକତା ଯେପରି ପ୍ରାଣକୁ ଆନ୍ଦୋଳିତ କରେ ସେ କଥା କବିଙ୍କ ଲେଖନୀରୁ ଆତ୍ମପ୍ରକାଶ କରିଛି । ନବବର୍ଷା ଭାବନା କବିତାରେ କବି ନିଜ ଜୀବନରେ ପ୍ରିୟା—ବିଚ୍ଛେଦ ଜନିତ ବିରହରେ ଗାଇଛନ୍ତି—

"ମେଘ ବରଷଇ ବିଜୁଳି ମାରଇ
ପବନ ବହଇ ଖରେ
ତରୁଣ ଯୌବନେ ମରଣ—ପ୍ରତିମା
ଛୁଡ଼ି ଆସି ଅଛି ଘରେ ।"

ଶର୍ମିଷ୍ଠା କାବ୍ୟରେ ଦେବଯାନୀ ଓ ଯଯାତିଙ୍କର ପ୍ରଣୟର ପ୍ରସଙ୍ଗରେ ଏହି ପ୍ରକାର ଭାବନାର ଉଦ୍ରେକ ହୋଇଅଛି । ଯଯାତି ଦେବଯାନୀଙ୍କୁ ସ୍ପର୍ଶ କରିବା ଦିନଠାରୁ ଦେବଯାନୀଙ୍କ ଶରୀରରେ ଏକ ଅପୂର୍ବ ଅନୁଭୂତିର ସଞ୍ଚାର ଓ କ୍ରମାଗତ ଭାବରେ ଏହି ଅନୁଭୂତି ବିଚ୍ଛେଦ ଯୋଗୁଁ ଅଧିକ ରସାଣିତ ହୋଇଅଛି । କନକଲତା ଉପନ୍ୟାସରେ ମଧ୍ୟ ସେହିପରି ଏକ ଚିତ୍ର ଦେଖିବାକୁ ମିଳେ । ଆଖଣ୍ଡଳମଣିଙ୍କର ଟେଡ଼ାରେ ଧନଞ୍ଜୟ ଓ କନକଲତାଙ୍କର ଶୁଭଚକ୍ଷୁର ମିଳନରେ ପରସ୍ପରର ହୃଦୟ ପରସ୍ପର ନିକଟରେ ମିଳିତ ହେବାର ଇଚ୍ଛା ପ୍ରକାଶ କରିଅଛି । କୃଷ୍ଣକୁମାରୀ କାବ୍ୟରେ

ପ୍ରଣୟ ବିଷୟରେ କବିଙ୍କର ଦୃଷ୍ଟିକୋଣ ସ୍ୱତନ୍ତ୍ର, ତାର କାରଣ ରାଜପୁତ ଜାତିର ବିଳକ୍ଷ୍ଣ ପରମ୍ପରା । 'ଲକ୍ଷ୍ମୀ' ଗଳ୍ପଟି ଏକ ସତ୍ୟମୂଳକ ଘଟଣା ଉପରେ ଗଢ଼ି ଉଠିଥିବାରୁ ଏ ଗଳ୍ପର ବାସ୍ତବତା ଖୋଜିବାକୁ ପଡ଼ିବନାହିଁ ।

ନନ୍ଦକିଶୋରଙ୍କର ସମଗ୍ର ସୃଷ୍ଟିରେ ବାସ୍ତବତାପ୍ରତି ତାଙ୍କର ତୀକ୍ଷ୍ଣ ଦୃଷ୍ଟିର ପରିଚୟର ସୂଚନା ମିଳିବା ସଙ୍ଗେ ସଙ୍ଗେ ଆମ ବାସ୍ତବ ଜୀବନର ସାମାଜିକ କୁସଂସ୍କାର ପ୍ରତି ସେ ଯେଉଁ ଆକ୍ଷେପ କରିଛନ୍ତି ସେ ଗୁଡ଼ିକ ଲକ୍ଷ୍ୟ କରିବାର କଥା ।

**ନନ୍ଦକିଶୋରଙ୍କର ପ୍ରବନ୍ଧ**—କାବ୍ୟ, କବିତା, ଉପନ୍ୟାସ ଓ କ୍ଷୁଦ୍ରଗଳ୍ପର ଲେଖକ ହିସାବରେ ନନ୍ଦକିଶୋରଙ୍କୁ ଆଲୋଚନା କଲାବେଳେ ତାଙ୍କ ପ୍ରତିଭାର ଆଉ ଗୋଟିଏ ଦିଗପ୍ରତି ଦୃଷ୍ଟି ଦେବାକୁ ହେବ । ଏହି ଦିଗଟି ହେଉଛି ପ୍ରବନ୍ଧ ଲେଖକ ହିସାବରେ ନନ୍ଦକିଶୋରଙ୍କ ସ୍ଥାନ । ଆଧୁନିକ ଓଡ଼ିଆ ସାହିତ୍ୟର ସମାଲୋଚନା କରିବାକୁ ଯାଇ ସେ ଲେଖିଛନ୍ତି "ସର୍ବପ୍ରଥମେ ଆମ୍ଭେମାନେ ଆଧୁନିକ ଉତ୍କଳ ସାହିତ୍ୟ—ମନ୍ଦିରର ଶ୍ରେଷ୍ଠ ବିଜ୍ଞାଣୀ କବି ରାଧାନାଥଙ୍କ କବିତାର ସଂକ୍ଷିପ୍ତ ଆଲୋଚନା କରିବୁଁ । ତହିଁ ଉତ୍ତାରୁ ଅନ୍ୟାନ୍ୟ ପ୍ରଧାନ ଲେଖକଙ୍କ ଗ୍ରନ୍ଥ ସମାଲୋଚନାରେ ହସ୍ତକ୍ଷେପ କରିବୁଁ ।" ଏହି କ୍ରମରେ 'କବି ରାଧାନାଥ ଓ ତାଙ୍କ କବିତା' 'ରାୟ ମଧୁ ସୂଦନ ରାଓ ବାହାଦୂର' 'ଉତ୍କଳକବି ଫକୀର ମୋହନ' 'ଛନ୍ଦମାଳା' ନାମରେ ୪ଟି ପ୍ରବନ୍ଧ ଲେଖିଛନ୍ତି । ବିଭିନ୍ନ ବିଷୟକୁ ଅବଲମ୍ବନ କରି 'ଭାରତର ଭବିଷ୍ୟତ ଭାଷା' 'ସମାଜିକ ଯନ୍ତ୍ର କଞ୍ଚିନ୍ତୁ' 'କର୍ମ' 'ସଂଗ୍ରାମ ଓ ଜୀବନ' 'ଉତ୍କଳ ସାହିତ୍ୟ' 'ଶଠିର ଉତ୍ତର' ଓ 'ରାଓଙ୍କ ସ୍ମୃତି' ପ୍ରଭୃତି ବିଷୟରେ କେତେ ଗୁଡ଼ିଏ ପ୍ରବନ୍ଧ ଲେଖିଛନ୍ତି ।

ଆଧୁନିକ ଓଡ଼ିଆ ସାହିତ୍ୟ ବିଷୟରେ ଆଲୋଚନା କରିବାକୁ ଯାଇ କବି ରାଧାନାଥଙ୍କ ସାହିତ୍ୟ ବିଷୟରେ ନନ୍ଦକିଶୋର ଯେଉଁ ଆଲୋଚନା କରିଛନ୍ତି ତାହା ବିଶେଷ ଭାବରେ ଉଲ୍ଲେଖ ହୋଇଛି ବୋଲି ମନେ ହୁଏନାହିଁ । ଏହି ଆଲୋଚନାରେ କାବ୍ୟ କବିତା ବିଷୟରେ କେତେକ ଆଳଙ୍କାରିକ ମତ ପ୍ରଦର୍ଶନ କରି ରାଧାନାଥଙ୍କ କାବ୍ୟକବିତାକୁ ସେହି ରୀତି ଭିତରେ ଅନ୍ତର୍ଭୁକ୍ତ କରିଛନ୍ତି । ବିଭିନ୍ନ ସ୍ଥାନରୁ ଉଦ୍ଧୃତି ଦେଇ ପ୍ରାବନ୍ଧିକ ରାଧାନାଥଙ୍କ କାବ୍ୟ-କବିତାର ଦୋଷ ବା ଗୁଣ ଯେପରି ଭାବରେ ନିର୍ଣ୍ଣୟ କରିବାକୁ ଯାଇଛନ୍ତି, ନିରପେକ୍ଷ ଆଲୋଚନା ହିସାବରେ ତାହା ସନ୍ତୋଷ-ଜନକ ନୁହେଁ । ..

ଆମର ମନେ ହୁଏ ରାଧାନାଥ-ସାହିତ୍ୟର ପ୍ରବୃତ୍ତି ସେ ସମୟରେ ମଧ୍ୟ ସମାଲୋଚକମାନଙ୍କର ଅଜ୍ଞାତ ଥିଲା । 'ରାୟ ମଧୁସୂଦନ ରାଓ ବାହାଦୂର'ଙ୍କ ବିଷୟରେ ଲେଖକ ଯେଉଁ ପ୍ରବନ୍ଧଟି ଲେଖିଛନ୍ତି ତାହା ମୁଖ୍ୟତଃ ତାଙ୍କ ଜୀବନକୁ ଅବଲମ୍ବନ କରି ଲେଖାଯାଇଛି । ତହିଁରେ ଧର୍ମ ସାଧନ ଓ ଧର୍ମ ପ୍ରଚାର, ଶିକ୍ଷା ବିସ୍ତାର, ପାରିବାରିକ ଧର୍ମପାଳନ ଓ ଅତିଥି ସତ୍କାର, ସମାଜ-ସଂସ୍କାର, ଜ୍ଞାନାର୍ଜନ, ସାହିତ୍ୟ ସେବା, ସମନ୍ୱୟ ପ୍ରଭୃତି ବିଭିନ୍ନ ବିଭାଗରେ ମଧୁସୂଦନଙ୍କ ବହୁମୁଖୀ ପ୍ରତିଭାର ଆଲୋଚନା କରା-ଯାଇଛି । ଉତ୍କଳକବି ଫକୀରମୋହନଙ୍କ ବିଷୟରେ ଲେଖକ କେବଳ ସଂକ୍ଷିପ୍ତ ଭାବରେ ତାଙ୍କର ଜୀବନୀଟିକୁ ଦେଇଛନ୍ତି । 'ଛନ୍ଦମାଳା' (୧ମଭାଗ) ଆଲୋଚନାରେ ସୌନ୍ଦର୍ଯ୍ୟାତ୍ମକ କବିତା ଓ ଉପଦେଶାତ୍ମକ କବିତା, ପାଣ୍ଡିତ୍ୟ ଓ କବିତ୍ୱ, କାବ୍ୟର ୩ଗୋଟି ଗୁଣ, ରଚନା ୩ଭାଗରେ ବିଭକ୍ତ, ଜାତୀୟ ସାହିତ୍ୟ, ମୋର ବାଲ୍ୟକାଳ ପ୍ରଭୃତି ବିଭାଗରେ ପର୍ଯ୍ୟବସିତ । ଏଥିରେ ଛନ୍ଦମାଳା

ଆଲୋଚନା ସଙ୍ଗେ ସଙ୍ଗେ ଲେଖକଙ୍କ ବ୍ୟକ୍ତିଗତ ଜୀବନର ଗ୍ରନ୍ଥମାଳା ସହିତ ସମ୍ପୃକ୍ତ ବିଷୟରେ କେତେକ କଥା ଜାଣିବାକୁ ମିଳେ । ଗ୍ରନ୍ଥମାଳା (୨ୟଭାଗ) ସମାଲୋଚନାରେ ଗ୍ରନ୍ଥମାଳାରେ ଥିବା କବିତାଗୁଡ଼ିକର ସଂକ୍ଷିପ୍ତ ପରିଚୟ ଦେବାପରେ ସେ ଗୁଡ଼ିକ ଦୋଷଗୁଣ ୧୩ଟିଗୋଟି ବିଭାଗରେ ନିର୍ଦ୍ଦେଶ କରିଛନ୍ତି । ଆଧୁନିକ ଓଡ଼ିଆ ସାହିତ୍ୟର ସମାଲୋଚନା ହିସାବରେ ନନ୍ଦକିଶୋରଙ୍କର ଏହି ସମାଲୋଚନା ଯେ ପ୍ରକୃଷ୍ଟ ସମାଲୋଚନାର ରୂପ ନୁହେଁ, ଏହା କହିବା ସଙ୍ଗେ ସଙ୍ଗେ ନନ୍ଦକିଶୋରଙ୍କର ବ୍ୟକ୍ତିତ୍ୱର ଯେ ଅପଳାପ କରାଯାଉଛି ଏକଥା ଯେପରି କେହି ନ ବୁଝନ୍ତି ।

ବିଭିନ୍ନ ବିଷୟକୁ ଅବଲମ୍ବନ କରି ନନ୍ଦକିଶୋର ଯେଉଁ ପ୍ରବନ୍ଧଗୁଡ଼ିକ ଲେଖିଛନ୍ତି ସେ ଗୁଡ଼ିକରୁ ନନ୍ଦକିଶୋରଙ୍କର ସ୍ୱାଧୀନ ଚିନ୍ତାର ପରିଚୟ ମିଳିଥାଏ । ସମାଜର କୁ-ସଂସ୍କାର ପ୍ରତି ତାଙ୍କର ତୀକ୍ଷ୍ଣ ଦୃଷ୍ଟି କୋଣ ଲକ୍ଷ୍ୟ କରିବାର କଥା । 'କର୍ମ' ବିଷୟରେ ସେ ଯାହା ଲେଖିଛନ୍ତି ତାହା ତାଙ୍କର ମାନବ ଜୀବନ ପ୍ରତି ଏକ ଅମୂଲ୍ୟ ଉପଦେଶ । 'ସଂଗ୍ରାମ ଓ ଜୀବନ' ପ୍ରବନ୍ଧରେ ଅନ୍ତରର ସଂଗ୍ରାମ ଓ ବାହାରର ସଂଗ୍ରାମ ବିଷୟ ଉଲ୍ଲେଖ କରି ଉଭୟରେ ଶକ୍ତିର ଆବଶ୍ୟକତା ସେ ଉପଲବ୍ଧି କରିଛନ୍ତି । 'ଉତ୍କଳ ସାହିତ୍ୟ' ବିଷୟରେ ଆଲୋଚନା କରି ଉତ୍କଳ-ସାହିତ୍ୟ ଯେ ଅତି ଧନ ସେ କଥା କହିଛନ୍ତି । ଆଧୁନିକ ଓଡ଼ିଆ ସାହିତ୍ୟର ପ୍ରସାର ନିମିତ୍ତ ପତ୍ର ପତ୍ରିକାର ଅଭ୍ୟୁଦୟ ଯେ ଏକ ବିଶିଷ୍ଟ ମାଧ୍ୟମ ଏହି ମତ ଦେଇ 'ଉତ୍କଳ ମଧୁପ' ଓ 'ଉତ୍କଳ ଦର୍ପଣ' ପତ୍ରିକା ଦ୍ୱୟର ଭୂୟସୀ ପ୍ରଶଂସା କରିଅଛନ୍ତି । 'ରାଓଙ୍କ ସ୍ମୃତି' ଲେଖକଙ୍କ ଡାଏରୀରୁ ସଂଗୃହୀତ । ଭକ୍ତକବି ମଧୁସୂଦନଙ୍କ ସହିତ ତାଙ୍କ ନିଜ ଜୀବନର କେତେଗୋଟି ସ୍ମୃତିକୁ ସେ ଏଥିରେ ଲିପିବଦ୍ଧ କରି ଅଛନ୍ତି ।

ପ୍ରାବନ୍ଧିକ ହିସାବରେ ଦେଖିବାକୁ ଗଲେ ମୌଳିକ ପ୍ରବନ୍ଧ ରଚନାରେ ନନ୍ଦ କିଶୋରଙ୍କର ଯେଉଁ ପାରଦର୍ଶିତା ଦେଖାଦେଇଛି ଆଲୋଚନା ବା ସମାଲୋଚନା ମୂଳକ ପ୍ରବନ୍ଧ ରଚନାରେ ତାଙ୍କର ସେ ପାରଦର୍ଶିତା ଦେଖା ଦେଇନାହିଁ । ସେ ଯାହା ହେଉନା କାହିଁକି ନନ୍ଦକିଶୋରଙ୍କର ପ୍ରତିଭା ଜଣେ ପ୍ରାବନ୍ଧିକ ଭାବରେ ସ୍ୱୀକାର କରିବାର କଥା ।

**ନନ୍ଦକିଶୋରଙ୍କର ସ୍ୱାତନ୍ତ୍ର୍ୟ**—ଓଡ଼ିଆ ସାହିତ୍ୟର ଆଧୁନିକ ଯୁଗରେ କବିବର ରାଧାନାଥଙ୍କ ଦୃଷ୍ଟି ପଶ୍ଚିମ ଦିଗନ୍ତକୁ ନିବଦ୍ଧ ଥିଲାବେଳେ ଗଙ୍ଗାଧରଙ୍କର ଦୃଷ୍ଟି ପୂର୍ବ ଦିଗନ୍ତରେ ସୀମିତ ଥିଲା । ବ୍ୟାସକବି ଫକୀର ମୋହନଙ୍କ ଦୃଷ୍ଟି ଏ ଜାତିର ସମସ୍ତ ଓ ସମାଜ ଉପରେ ଯେପରି ଭାବରେ ନିବଦ୍ଧଥିଲା ନନ୍ଦକିଶୋରଙ୍କ ଦୃଷ୍ଟି ସେହିପରି ଭାବରେ ଏ ଦେଶର ସାଧାରଣ ପଲ୍ଲୀ ପ୍ରତି ନିବଦ୍ଧ ଥିଲା । ପଲ୍ଲୀ ପ୍ରକୃତିର ଠିକ ନିଖ ବର୍ଣ୍ଣନା, ପଲ୍ଲୀ ଜୀବନର ସୁଖ ଦୁଃଖ, ଭଲ ମନ୍ଦର ବର୍ଣ୍ଣନା ପଲ୍ଲୀ ସମାଜର କୁସଂସ୍କାର ପ୍ରତି ଆକ୍ଷେପ, ସର୍ବୋପରି ନିଜ ଜୀବନର ସୁଖ ଦୁଃଖର ସ୍ମୃତିର ବର୍ଣ୍ଣନାରେ କବିଙ୍କ ସ୍ୱତନ୍ତ୍ର ଦୃଷ୍ଟି କୋଣର ପରିଚୟ ଯଥେଷ୍ଟ ଭାବରେ ମିଳିଅଛି । ସେ କାବ୍ୟ, ଉପନ୍ୟାସ, ଗଳ୍ପ ଓ ପ୍ରବନ୍ଧ ଲେଖିଥିଲେ ହେଁ ପଲ୍ଲୀକବିତା ବା ଲଘୁ କବିତା ରଚନାରେ ତାଙ୍କର ବୈଶିଷ୍ଟ୍ୟ ନିହିତ । ଏହି ଲଘୁ କବିତା ଶିଶୁ ସାହିତ୍ୟ ସୃଷ୍ଟିର ଆଉ ଏକ ପର୍ଯ୍ୟାୟ । ନନ୍ଦକିଶୋରଙ୍କପରେ ପଲ୍ଲୀର ପ୍ରକୃତିକୁ ଉପଜୀବ୍ୟ-ରୂପେ ଗ୍ରହଣ କରି ଅନେକ କବି ବା ଲେଖକ ବାଣୀ ଆରାଧନା କରିଥିଲେହେଁ ନନ୍ଦକିଶୋରଙ୍କ ଭଳି ବୈଶିଷ୍ଟ୍ୟ ପ୍ରଦର୍ଶନ କରିପାରି ନାହାନ୍ତି । ନନ୍ଦକିଶୋରଙ୍କର 'ସ୍ୱାତନ୍ତ୍ର୍ୟ ଓଡ଼ିଆ ସାହିତ୍ୟରେ ଏ ଦିଗରୁ ଅବିସ୍ମରଣୀୟ ।

—*—

# କବି ଗୋଦାବରୀଶ ।

## ୧-ଓଡ଼ିଆ ସାହିତ୍ୟରେ ସତ୍ୟବାଦୀ-ଚିନ୍ତାଧାରା—

ଆଧୁନିକ ଓଡ଼ିଆ ସାହିତ୍ୟ କବିବର ରାଧାନାଥଙ୍କ ଜୀବନ ବ୍ୟାପୀ ସାଧନାର ଫଳ । ଅଷ୍ଟାଦଶ ଶତାବ୍ଦୀରୁ ଓଡ଼ିଆ ସାହିତ୍ୟରେ ଚାଲି ଆସୁଥିବା ଭଞ୍ଜୀୟ ପରମ୍ପରାକୁ ବିଚ୍ୟୁତ କରି କବିବର ରାଧାନାଥ କାବ୍ୟ କବିତା—ଜଗତରେ ଏକ ନୂତନ ସରଣୀର ସନ୍ଧାନ ଦେଲେ । ଫଳରେ ଯେଉଁ ନୂତନ ପରଂପରା ଗଢ଼ି ଉଠିଲା ସେ ପରଂପରା ଏ ଦେଶର ନୂତନ ଶିକ୍ଷିତ ପାଠକ ଦ୍ୱାରା ଆଦୃତ ହେବା ସଙ୍ଗେ ସଙ୍ଗେ ନୂତନ ସ୍ରଷ୍ଟାମାନଙ୍କ ଦ୍ୱାରା ଅନୁସୃତ ହେଲା । ଓଡ଼ିଆ ପଦ୍ୟ ସାହିତ୍ୟରେ ନୂତନ ସରଣୀର ସନ୍ଧାନ ମିଳିବା ସଙ୍ଗେ ସଙ୍ଗେ ଓଡ଼ିଆ ଗଦ୍ୟ ସାହିତ୍ୟ ଏହି ଯୁଗରେ ଫକୀର ମୋହନଙ୍କ ହାତରେ ଏକ ବିଶିଷ୍ଟ ରୂପ ଲାଭ କଲା । ତେଣୁ ଓଡ଼ିଆ ସାହିତ୍ୟରେ ପଦ୍ୟ ଓ ଗଦ୍ୟ ଉଭୟ ଦିଗ ଏ ଯୁଗରେ ଯେଉଁ ଅଗ୍ରଗତିର ସୂଚନା ଦେଇଛି ତାହା ଅତୁଳନୀୟ ।

ରାଧାନାଥଙ୍କ କାବ୍ୟ କବିତା ସୃଷ୍ଟିରେ ରସର ପ୍ରାଚୁର୍ଯ୍ୟ ଭିତରେ ଓଡ଼ିଆ ପାଠକ ପ୍ରଥମ ଥର ପାଇଁ ହଜି ଯାଇଛି । ମାତ୍ର ପରେ ଯେତେବେଳେ ଓଡ଼ିଆ ପାଠକ ସଚେତନ ହୋଇଛି ସେତେବେଳେ ଏକାଧିକ କାରଣରୁ ରାଧାନାଥଙ୍କ ସାହିତ୍ୟ ସୃଷ୍ଟି ଭିତରୁ ସେ ଦୋଷ ବାଛିବାକୁ ସମର୍ଥ ହୋଇଛି । ଏହି ଦୋଷ ହେଉଛି, ରାଧାନାଥ ଏ ଦେଶର ଜାତୀୟତାକୁ ବା ଜାତୀୟ ମର୍ଯ୍ୟାଦାକୁ କ୍ଷୁଣ୍ଣ କରିଛନ୍ତି । ଏପରି ସମାଲୋଚନା କରୁଥିବା କେତେକ ବ୍ୟକ୍ତି ଅତ୍ୟନ୍ତ ଉଗ୍ରପନ୍ଥୀ ହୋଇ ପଡ଼ିଛନ୍ତି । ସମୟର ଗୁରୁତ୍ୱ ସାହିତ୍ୟ ଉପରେ ଯଥେଷ୍ଟ ପ୍ରଭାବ ଆଣିଥାଏ । ରାଧାନାଥଙ୍କ ପରେ ଏ

ଦେଶରେ ଏପରି ଏକ ସମୟ ଆସି ପହଞ୍ଚିଲା ଯାହାକି ରାଧାନାଥ ସାହିତ୍ୟର ଚିନ୍ତାଧାରାକୁ ପରିବର୍ତ୍ତନ କରିବା ନିମିତ୍ତ ସୁଯୋଗ ଦେଲା । ରାଧାନାଥ ଶିକ୍ଷା ବିଭାଗରେ କର୍ମରତ ଥିବା ସମୟରେ କାବ୍ୟକବିତା ସୃଷ୍ଟି କରୁଥିବା ସମୟରେ ଗୋପବନ୍ଧୁ, ନୀଳକଣ୍ଠ ଓ ଗୋଦାବରୀଶ ପ୍ରମୁଖ ଦେଶ ହିତୈଷୀ କର୍ମୀଗଣ ଛାତ୍ରଥିଲେ । ଛାତ୍ରାବସ୍ଥାରୁ ଏମାନଙ୍କର ସ୍ୱାଧୀନଚେତା ମନୋବୃତ୍ତିର ପରିଚୟ ମିଳିଥିଲା । ଏମାନେ ଯେତେବେଳେ ଦେଶ ସେବାବ୍ରତରେ ବ୍ରତୀ ହେଲେ ସେତେବେଳେ ଜାତୀୟତା ଏମାନଙ୍କ ସମ୍ମୁଖରେ ଏକ ଉଜ୍ଜ୍ୱଳ ଆଦର୍ଶରୂପେ ପ୍ରତିଭାତ ହେଲା । ଜାତୀୟବାଦୀ ଦୃଷ୍ଟି କୋଣ ନେଇ ଏମାନେ ଯେତେବେଳେ ସାହିତ୍ୟ-ସାଧନା କରି ବସିଲେ ସେତେ-ବେଳେ ରାଧାନାଥ ସାହିତ୍ୟରେ ରୂପ ପାଇଥିବା ତଥାକଥିତ ବିଜାତୀୟ ମନୋବୃତ୍ତିକୁ ଆକ୍ଷେପ କରି ବସିଲେ । ଏମାନଙ୍କର ସାହିତ୍ୟ-ସୃଷ୍ଟି ଭିତରେ ଜାତିର ଗୌରବମୟ କିମ୍ବଦନ୍ତୀ ସହିତ ଜାତୀୟ ମର୍ଯ୍ୟାଦାର ଅଭିବୃଦ୍ଧି ସମ୍ପାଦନ ଏକ ମହତ୍ ଲକ୍ଷ୍ୟ ହୋଇ ପଡ଼ିଲା । ଦେଶ ସେବାରେ ନିଜକୁ ଉତ୍ସର୍ଗକରି ପଣ୍ଡିତ ଗୋପବନ୍ଧୁ ସତ୍ୟବାଦୀଠାରେ ବନ ବିଦ୍ୟାଳୟ ସ୍ଥାପନ କରି ଏ ଦେଶର ଯୁବ-ସଂପ୍ରଦାୟକୁ ଜାତୀୟ ଭିତ୍ତିରେ ଶିକ୍ଷାଦାନ କରି ଜୀବନକୁ ଗଢ଼ିବାର ପ୍ରୟାସ କରିଥିଲେ । ସତ୍ୟବାଦୀର ଏହି ଅନୁଷ୍ଠାନର ନାମ ଅନୁସାରେ ଏହି ସାହିତ୍ୟ ସାଧକମାନଙ୍କର ଚିନ୍ତାଧାରାକୁ ଓଡ଼ିଆ ସାହିତ୍ୟରେ ସତ୍ୟବାଦୀ ଚିନ୍ତାଧାରା ନାମରେ ନାମିତ କରାଯାଏ । କେତେକ ସମାଲୋଚକ ଓଡ଼ିଆ ସାହିତ୍ୟରେ ଏହି ସମୟକୁ 'ସତ୍ୟବାଦୀଯୁଗ' ନାମରେ ନାମିତ କରନ୍ତି । ମାତ୍ର ପ୍ରକୃତ ପକ୍ଷରେ ସତ୍ୟବାଦୀ ଯୁଗକୁ ଯୁଗ ନ କହି ଗୋଟିଏ ଉପଯୁଗ ରୂପେ ଗ୍ରହଣ କରି ନେବାର ସାର୍ଥକତା ଅଛି । ସତ୍ୟବାଦୀ ଗୋଷ୍ଠୀର କର୍ଣ୍ଣଧାର ଉତ୍କଳମଣି

ଗୋପବନ୍ଧୁ ଓଡ଼ିଆ ସଂସ୍କୃତିର ଆଲୋଚକରୂପେ, ଗୋଦାବରୀଶ ଅଭିନବ ଗୀତିକବିତାର ପ୍ରତିଷ୍ଠାତା ରୂପେ, କୃପାସିନ୍ଧୁ ଓଡ଼ିଆଜାତିର ଇତିହାସ ସଂଗଠକ ରୂପେ ଏବଂ ନୀଳକଣ୍ଠ ଓଡ଼ିଆ ସଂସ୍କୃତିର ଭିତ୍ତିରେ ନବଗୀତିର କାବ୍ୟ ବିରଚକ ରୂପେ ଆତ୍ମପ୍ରକାଶ କଲେ । ସମସ୍ତଙ୍କର ଲକ୍ଷ୍ୟ ଗୋଟିଏ—ଉତ୍କଳର ଗୌରବମୟ ଚିତ୍ରାଙ୍କନ ଏବଂ ଗୌରବ-ସୂଚକ ଜନଶ୍ରୁତିର ସାହଚର୍ଯ୍ୟରେ ପାଠକମାନଙ୍କର ଉଦ୍‌ବୋଧନ । ତେଣୁ ସତ୍ୟବାଦୀ ସାହିତ୍ୟହିଁ ପ୍ରତ୍ୟକ୍ଷ ଭାବରେ ଜାତୀୟ ଭାବପୂର୍ଣ୍ଣ ସାହିତ୍ୟ ।

**୨-ଗୋଦାବରୀଶଙ୍କର ଜୀବନ ଚରିତ**—'ଅର୍ଦ୍ଧଶତାବ୍ଦୀରେ ଓଡ଼ିଶା ଓ ତହିଁରେ ମୋ ସ୍ଥାନ' ଶୀର୍ଷକ ଏକ ପୁସ୍ତକରେ ଗୋଦାବରୀଶ ତାଙ୍କର ଆତ୍ମ ଜୀବନ-ଚରିତ ଲେଖି ଅଛନ୍ତି । ତାଙ୍କର ଜୀବଦ୍ଦଶାରେ ଏହା ସମାପ୍ତ ହୋଇ ପାରିନାହିଁ । ତାଙ୍କର ମୃତ୍ୟୁପରେ ଏହା ପ୍ରକାଶ ପାଇଛି । ଏହି ପୁସ୍ତକର କଳେବର ଭିତରେ ଲେଖକ ଅର୍ଦ୍ଧ ପରୁଶ ବର୍ଷର ଓଡ଼ିଶାର ରାଜନୈତିକ ଇତିହାସ ଲିପିବଦ୍ଧ କରି ଯାଇଛନ୍ତି । ଲେଖକଙ୍କ ବାଲ୍ୟକାଳରୁ ପ୍ରତ୍ୟେକ ଘଟଣା ଅତ୍ୟନ୍ତ ସାହସିକ ଭାବରେ ଏଥିରେ ସ୍ଥାନ ପାଇଛି । ରାଜନୀତି ସହିତ ତାଙ୍କ ଜୀବନର ସାଧ୍ୟ ସାଧନା ଓଡ଼ିଆ ତଥା ଭାରତର ରାଜନୈତିକ ଆନ୍ଦୋଳନର ଯେଉଁ ଚିତ୍ରଗୁଡ଼ିକ ଏଥିରେ ଦିଆଯାଇଛି ତାହା ଅନେକ ଗୁପ୍ତତଥ୍ୟ ପ୍ରକାଶ କରିବାରେ ସମର୍ଥ ହୋଇଛି । ଲେଖକଙ୍କର ଶିକ୍ଷା ପାଇବା ସମୟରେ ତାଙ୍କର ପାରି-ବାରିକ ଜୀବନର ଦାରିଦ୍ର୍ୟ ଓ ପରବର୍ତ୍ତୀ କର୍ମୀ ଜୀବନର ଦାରିଦ୍ର୍ୟକୁ ଲେଖକ ଅକୁଣ୍ଠ ଭାବରେ ପ୍ରକାଶ କରିଛନ୍ତି । ଯେଉଁ ସ୍ଥାନରେ ଲେଖକ ଉଚିତ ମନେ କରିଛନ୍ତି ସେହି ସ୍ଥାନରେ ତାଙ୍କର ସମ-ସାମୟିକ ଦେଶପ୍ରେମୀ କର୍ମୀମାନଙ୍କର କ୍ରିୟା କଳାପକୁ ସେ

ସମାଲୋଚନା କରି ଅଛନ୍ତି । ଏପରିକି ଉତ୍କଳମଣି ଗୋପବନ୍ଧୁ, ଡକ୍ଟର ରାଜେନ୍ଦ୍ର ପ୍ରସାଦ ମଧ୍ୟ ତାଙ୍କର ସମାଲୋଚନା ବାଣରୁ ମୁକ୍ତି ପାଇ ନାହାନ୍ତି । ସ୍ୱାଧୀନମତ ପ୍ରକାଶ କରିବାରେ ଲେଖକଙ୍କର ସାହସିକତା ପ୍ରଣିଧାନର ଯୋଗ୍ୟ । ଉତ୍କଳର ବିଚ୍ଛିନ୍ନ ଅଞ୍ଚଳର ସମ୍ମିଶ୍ରଣ ପାଇଁ ସେ ବିଚ୍ଛିନ୍ନ ଅଞ୍ଚଳକୁ ଯାଇ ଯେଉଁ ସଂଗଠନ ମୂଳକ କାର୍ଯ୍ୟ କରିଥିଲେ ସେ ଗୁଡ଼ିକର ବିବରଣୀ ଅତି ଠିକ ନକ୍ସି ଭାବରେ ଦେଇଛନ୍ତି । ସତ୍ୟବାଦୀ ବନ ବିଦ୍ୟାଳୟର ଇତିହାସ ଏଥିରୁ ମିଳିଥାଏ । ଉତ୍କଳ ବିଶ୍ୱବିଦ୍ୟାଳୟର ସ୍ଥାପନାନିମିତ୍ତ ତାଙ୍କର ଚେଷ୍ଟା ଯେ ଯଥେଷ୍ଟ ଥିଲା ସେ କଥା ଏହି ଆତ୍ମ ଚରିତରୁ ଜଣାଯାଏ । ତାଙ୍କର ଏହି ଆତ୍ମ ଚରିତଟି ଦୁଇ ଭାଗରେ ବିଭକ୍ତ । ତାଙ୍କର ଆତ୍ମଚରିତ ପାଠ କଲେ ମନେ ହୁଏ ଏପରି ନିର୍ଭୀକ ଭାବରେ ସତ୍ୟ କଥାଗୁଡ଼ିକର ପ୍ରକାଶ ନିଜର ଜୀବନ ଚରିତରେ ଅନ୍ୟ କେହି କରିବାକୁ ସମର୍ଥ ହୋଇ ନାହାନ୍ତି । ତେଣୁ ଗୋଦାବରୀଶଙ୍କ ଜୀବଦ୍ଦଶାରେ ଯଦି ଏହି ଜୀବନ ଚରିତଟି ପରିସମାପ୍ତି ଲାଭ କରିଥାନ୍ତା ତାହା ହେଲେ ଓଡ଼ିଶାର ରାଜନୈତିକ ଇତିହାସର ଆହୁରି ଅନେକ ତଥ୍ୟ ଉଦ୍‌ଘାଟିତ ହୋଇ ପାରିଥାନ୍ତା ।

**୩-ଗୋଦାବରୀଶଙ୍କ ନାଟକ**—ସତ୍ୟବାଦୀ ଗୋଷ୍ଠୀର ଚିନ୍ତାଧାରା ସବୁବେଳେ ଜାତୀୟ ମର୍ଯ୍ୟାଦାର ଅଭିବୃଦ୍ଧି ନିମିତ୍ତ ଉଦ୍ଦିଷ୍ଟ । ତେଣୁ ଏହି ସାଧକଗଣଙ୍କ ସାହିତ୍ୟ ସୃଷ୍ଟି ପ୍ରତ୍ୟକ୍ଷ ଭାବରେ ଜାତୀୟଭାବର ଅଭିବୃଦ୍ଧି ସଂପାଦନ କରିଅଛି । ରାଧାନାଥ ସାହିତ୍ୟରେ ଜାତୀୟ-ବିଦେଶୀ ମନୋଭାବ ଲକ୍ଷ୍ୟ କରି ଜାତୀୟ ଭାବମୂଳକ ସାହିତ୍ୟ ଏହି ସତ୍ୟବାଦୀ ଗୋଷ୍ଠୀର ସାଧକଗଣ ସୃଷ୍ଟି କରିବାର ପ୍ରୟାସ କରିଥିଲେ । ତେଣୁ ରାଧାନାଥ ଯୁଗପରେ ଜାତୀୟତାର ଭିତ୍ତିରେ ରାଧାନାଥ ଯୁଗର ସାହିତ୍ୟ ସଂପଦକୁ ଦେଖି ତହିଁରେ

ଥିବା ଭୁଲ୍ ଭ୍ରାନ୍ତିର ସଂଶୋଧନ କରିବାର ପ୍ରୟାସ ଏହି ସମୟରେ ଦେଖା ଦେଇଛି । ୧୮୮୦ ସାଲରେ ରଚିତ କାଞ୍ଚି କାବେରୀ ନାଟକରେ ରୂପାୟିତ ହୋଇଥିବା କଥାବସ୍ତୁକୁ ଗ୍ରହଣ କରି ପଣ୍ଡିତ ଗୋଦାବରୀଶ 'ପୁରୁଷୋତ୍ତମ ଦେବ' ନାଟକ ଲେଖି ଅଛନ୍ତି । ଉତ୍କଳର କିମ୍ବଦନ୍ତୀରୁ କାଞ୍ଚି କାବେରୀର କଥାବସ୍ତୁ ସଂଗୃହୀତ ହୋଇଥିଲେ ହେଁ ଜାତୀୟତାର ମହତ୍ତ୍ୱ ସେଥିରେ ଗୋଦାବରୀଶଙ୍କ ଦୃଷ୍ଟିରୁ ପ୍ରତିପାଦିତ ହୋଇ ପାରିନାହିଁ । ଜଗନ୍ନାଥ, ବଳଭଦ୍ର ଧଳା ଘୋଡ଼ା କଳା ଘୋଡ଼ା ଚଢ଼ି କାଞ୍ଚି ଯୁଦ୍ଧରେ ପୁରୁଷୋତ୍ତମ ଦେବଙ୍କୁ ସାହାଯ୍ୟ କରିବା ନିମିତ୍ତ ଯାଇଥିବାର କିମ୍ବଦନ୍ତୀ ଶମଣଙ୍କର ଶୟୁଙ୍କ ସମୟରେ ଏ ଜାତିର ଆଦର୍ଶ ପ୍ରଚାର ନିମିତ୍ତ ଏକ କଳଙ୍କ ଘଟଣା ହୋଇପାରେ । ମାତ୍ର ଗୋଦାବରୀଶଙ୍କ ଦୃଷ୍ଟିରେ ତାହା ନୁହେଁ । ଏ ଜାତିର ବୀରତ୍ୱ ଭାରତ ବିଦିତ । ସେ ବୀରତ୍ୱ ଜଗନ୍ନାଥଙ୍କ ବାହୁ ଛାୟାର ଆଶ୍ରୟରେ ନୁହେଁ । ତେଣୁ ପୁରୁଷୋତ୍ତମ-ଦେବଙ୍କୁ ଜଗନ୍ନାଥଙ୍କର ଆଜ୍ଞାଧୀନ ଏବଂ ଦୟାର ପାତ୍ର ରୂପେ ଚିତ୍ରଣ ନ କରି ପୁରୁଷୋତ୍ତମ ଦେବ ତଥା ସମଗ୍ର ଓଡ଼ିଆ ଜାତିର ବୀରତ୍ୱ ପ୍ରଦର୍ଶନ କରିବା ନିମିତ୍ତ ସେ 'ପୁରୁଷୋତ୍ତମଦେବ' ନାଟକ ରଚନା କରି ଅଛନ୍ତି । ଏହି ପୁରୁଷୋତ୍ତମ ଦେବ ନାଟକରେ ପୁରୁଷୋତ୍ତମଦେବଙ୍କ ଚରିତ୍ର ଚିତ୍ରଣରେ ଗୋଦାବରୀଶ ଜାତିର ମହତ୍ତ୍ୱ ପ୍ରଚାର ନିମିତ୍ତ ଏକ ଆଦର୍ଶ ବୀରର ପରିଚୟ ଦେଇଅଛନ୍ତି । ନାଟକର ପ୍ରତ୍ୟେକ ସ୍ତରରେ ଲେଖକଙ୍କର ଜାତୀୟଭାବ ଲକ୍ଷ୍ୟ କରିବାର କଥା । ପ୍ରଥମ ଅଙ୍କର ୬ଷ୍ଠ ଦୃଶ୍ୟରେ ସୈନିକଗଣଙ୍କ ମୁଖରେ କବି ଗୋଦାବରୀଶ ଯେଉଁ ସଂଗୀତଟି ସଂଯୋଜନା କରିଛନ୍ତି ତାହା ତାଙ୍କର ଜାତୀୟ ଭାବର ଅନ୍ୟ ଏକ ଉଦାହରଣ—

"ରଞ୍ଜିତ ଅସିଧାରେ, ଶତ୍ରୁ ରକ୍ତଗାରେ —
ଲେଖି ହେ ଆଜ ବିଜୟ ବିଭବ ଜନ୍ମଭୂମି ଭାଲେ ।"

ଏହି ସଙ୍ଗୀତଟି ଓଡ଼ିଶାର ଜନସାଧାରଣଙ୍କ ନିକଟରେ ଅତି ନିବିଡ଼ ଭାବରେ ପରିଚିତ । ତାଙ୍କର ମୁକୁନ୍ଦଦେବ ନାଟକରେ ମଧ୍ୟ ଜାତୀୟଭାବର ଉନ୍ମେଷ ଘଟିଛି । ଓଡ଼ିଶାର ଦୁର୍ଦ୍ଦିନରେ ଗଜପତିଙ୍କର ଦୁର୍ଭାଗ୍ୟରେ ଓଡ଼ିଶାର ଭାଗ୍ୟରବି ଯେତେବେଳେ ଅସ୍ତମିତ ସେତେବେଳେ ମଧ୍ୟ ଓଡ଼ିଆର ଶୌର୍ଯ୍ୟ ଲକ୍ଷ୍ୟ କରିବାର କଥା । ଶିଖି, ମନାଇ ପରି ଚରିତ୍ରର ଅବତାରଣା କରି ନାଟ୍ୟକାର ଇତିହାସ ଗତ ସତ୍ୟତାର ରକ୍ଷା କରିବା ସଙ୍ଗେ ସଙ୍ଗେ ଏ ଜାତିର ଅଧୋଗତି ନିମିତ୍ତ ଏ ଦୁଇଟି ଚରିତ୍ର ଯେ ଅନେକ ପରିମାଣରେ ଦାୟୀ ଏ କଥା ପ୍ରକାଶ କରିଛନ୍ତି ।

ରାଧାନାଥ ଯୁଗରେ ଓଡ଼ିଆ ନାଟକର ଅଭ୍ୟୁଦୟ ହେଲେ ହେଁ ନାଟକର ବିଳକ୍ଷଣ ବିକାଶ ଏ ଯୁଗରେ ସମ୍ଭବପର ହୋଇ ପାରିନାହିଁ । ନାଟ୍ୟକାର ରାମଶଙ୍କର ଓଡ଼ିଆ ନାଟ୍ୟ ସାହିତ୍ୟର ପ୍ରତିଷ୍ଠାତାରୂପେ ପୂଜ୍ୟ । ମାତ୍ର ତାଙ୍କର ନାଟକଗୁଡ଼ିକ ସଂସ୍କୃତ ଓ ଇଂରେଜୀ ନାଟକ ରଚନା ଭିତ୍ତିର ପ୍ରଭାବ ଯୋଗୁଁ, ବାସ୍ତବ ଅବାସ୍ତବ ବିଚାର ନ କରି କିଂବଦନ୍ତୀଗୁଡ଼ିକର ସ୍ଥାପନା ଯୋଗୁଁ, ଚରିତ୍ର ବିଶେଷ ବିଚାର ନ କରି ସଂସ୍କୃତ ଶବ୍ଦ ବହୁଳ ଗମ୍ଭୀର ଭାଷାରେ ସଂଳାପ ସଂଯୋଜନା ଯୋଗୁଁ, ଅମିତ୍ରାକ୍ଷର ଛନ୍ଦରେ ଦୀର୍ଘ ସଂଳାପ ପ୍ରୟୋଗ ଯୋଗୁଁ ଲୋକ ପ୍ରିୟ ହେବାର ଅବକାଶ ପାଇ ନାହିଁ । ରାମଶଙ୍କରଙ୍କର ପରେ ଓଡ଼ିଆ ନାଟକର ବିଳକ୍ଷଣ ବିକାଶ ପାଇଁ ଗୋଦାବରୀଶଙ୍କ ସ୍ଥାନ ଅପରିସୀମ । ଗୋଦାବରୀଶଙ୍କ ଉପରେ ଇଂରେଜୀ ସାହିତ୍ୟର ପ୍ରଭାବ ଯେତିକି ଥିଲା, ପ୍ରତ୍ୟେକ ସ୍ତରରେ

ମାନବ ଜୀବନ ସହିତ ସେତିକି ସଂପୃକ୍ତ ଥିଲା । ତେଣୁ ଆଧୁନିକ ରୂପରେ ବାସ୍ତବ ପରିସରରେ ନାଟକ ରଚନା କରିବାର କୌଶଳ ତାଙ୍କଠାରେ ପରିଲକ୍ଷିତ ହୁଏ ।

ଏହି ନାଟକ ଦୁଇଟି ଓଡ଼ିଶାରେ ବିଭିନ୍ନାଞ୍ଚଳରେ ବହୁବାର ଅଭିନୀତ ହୋଇଅଛି । ଉତ୍କଳର ବୀରତ୍ୱ ଓ ପୌରୁଷ ଯେପରି ଭାବରେ ଏହି ନାଟକ ଦୁଇଟିରେ ପ୍ରକାଶ ପାଇଛି ଉତ୍କଳ ନାରୀର ସତୀତ୍ୱ ଓ ମର୍ଯ୍ୟାଦା ସେହିପରି ଭାବରେ ପ୍ରକାଶ ପାଇଛି । ଏହି ନାଟକ ଦୁଇଟି ସତ୍ୟବାଦୀର ବନ ବିଦ୍ୟାଳୟରେ ବହୁବାର ଅଭିନୀତ ହେବା ସଙ୍ଗେ ସଙ୍ଗେ ସେ ସମୟର ସ୍କୁଲ କଲେଜର ଛାତ୍ର ମହଲରେ ପ୍ରସିଦ୍ଧି ଲାଭ କରିଥିଲା ।

**୪-ଗୋଦାବରୀଶଙ୍କ କବିତା**—ଗୋଦାବରୀଶଙ୍କ କବିତାଗୁଡ଼ିକୁ ୯ଟି ମୁଖ୍ୟ ଭାବରେ ରଖା ଯାଇଅଛି । ଏହି ନଅଟି ଭାଗ ହେଲେ କଳିକା, କଣିଳୟ, ଆଲେଖିକା, ଚୟନିକା, କୁସୁମ, କବିତାୟନ, ଗୀତାୟନ, ଗୀତିଗୁଚ୍ଛ, ଶିଶୁ କବିତା । ଏହି ପ୍ରତ୍ୟେକ ବିଭାଗରେ ବହୁ ସଂଖ୍ୟାରେ କବିତା ସନ୍ନିବେଶିତ ।

ଆଧୁନିକ ଓଡ଼ିଆ ସାହିତ୍ୟରେ ଗୀତି କବିତାର ସ୍ରଷ୍ଟାରୂପେ କବି ଗୋଦାବରୀଶ ସମ୍ମାନିତ । କବିଙ୍କର ଇଂରେଜୀ ଭାଷା ଓ ସାହିତ୍ୟରେ ଗଭୀର ଜ୍ଞାନ ଥିଲା । ତାଙ୍କର ଗୀତି କବିତା ରଚନା ଅନେକ ପରିମାଣରେ ଇଂରେଜୀ ଗୀତିଦ୍ୱାରା ସ୍ପଷ୍ଟ ଭାବରେ ପ୍ରଭାବିତ । ଅନେକ ସ୍ଥାନରେ କବି ଇଂରେଜୀ କବିତା ଅନୁବାଦ କରିଛନ୍ତି, ପୁଣି ଇଂରେଜୀ କବିତାର ଭାବକୁ ଗ୍ରହଣ କରି କେତେକ କବିତା ଲେଖିଛନ୍ତି । ଏହି ସବୁ କବିତାଗୁଡ଼ିକରେ ପ୍ରାଣ ପ୍ରାଚୁର୍ଯ୍ୟର ସନ୍ଧାନ ପାଠକ ପ୍ରତ୍ୟେକ ଛତ୍ରରେ ଅନୁଭବ କରେ ।

କବିଙ୍କର ପ୍ରଥମ କବିତା 'ସରସ୍ୱତୀ ଆବାହନ' ୧୯୦୯ରେ ଉତ୍କଳ ସାହିତ୍ୟରେ ପ୍ରକାଶ ପାଇଥିଲା । ଏହି କବିତାଟି ପାଠ କରି ଫକୀର ମୋହନ କବିଙ୍କ ପାଖକୁ ଏକ ପ୍ରଶଂସାପତ୍ର ଲେଖିଥିଲେ । କବିଙ୍କର ଦ୍ୱିତୀୟ କବିତା କଲିକତାରେ ଲେଖାହୋଇ ସେହି ଉତ୍କଳ ସାହିତ୍ୟରେ ପ୍ରକାଶ ପାଇଥିଲା । ମାତ୍ର ପ୍ରକୃତ ପକ୍ଷରେ ଏହା ଦ୍ୱିତୀୟ କବିତା ନୁହେଁ । କଟକରେ ପଢ଼ୁଥିଲା ବେଳେ ସେ ଆହୁରି କେତେକ କ୍ଷୁଦ୍ର କବିତା ଲେଖିଥିଲେ । ଗୋଟିଏ ଶୁଆର ମୃତ୍ୟୁକୁ ଲକ୍ଷ୍ୟ କରି କବି କଟକରେ 'ପଞ୍ଜୁରୀ' ନାମକ ଯେଉଁ କବିତାଟି ଲେଖିଥିଲେ ତାହା 'କଣିକା'ରେ ପ୍ରକାଶ ପାଇଅଛି । ଗୋଟିଏ ମୃତ୍ୟୁରେ ବ୍ୟଥିତ ଗୋଦାବରୀଶ ଲେଖିଥିଲେ—

"ସେ ଯେ ପ୍ରୀତି ଡୋରେ ହୃଦେ ହୃଦ ବାନ୍ଧି
ବେନି ଜନେ ଥିଲୁ ଉଷତେ ରହି
ସେ ପ୍ରାଣ ପକ୍ଷୀଟି ତେଜିଗଲା ଯେବେ
କି ସୁଖ ବୋଇର ଏ ଭବ ବହି ?"

ଗୋଦାବରୀଶ ବି. ଟି. ପଢ଼ିବା ପାଇଁ କଲିକତାରେ ଥିବା ସମୟରେ ବଡ଼ ଦିନ ଛୁଟିରେ ଘରକୁ ନ ଆସି ସେଇଠାରେ ରହିଥିଲେ । ତାଙ୍କର ସହପାଠୀମାନେ ଯେଝା ଘରକୁ ଚାଲିଗଲେ । ଏହି ସମୟରେ କବିଙ୍କର ମନରେ ଜାତହୋଇଥିବା ଦୁଃଖକୁ ପ୍ରକାଶ କରିବା ଲାଗି 'ଯାଅ' ନାମକ କବିତା ଲେଖିଥିଲେ । ସେ ଲେଖିଥିଲେ,

"ଯାଅ ବନ୍ଧୁ ଜଣେ ଜଣେ, ଏଭଳି ସରଗଣିସ୍ତି
ତେଜି, କପିଁ । ମରୁଦେଶେ ଏଥି ଯାଉଥିବ ସନ୍ଧି ।

ମୁଁ ଯେ ରହିଲି ଏକା ନିର୍ଜନ ନିଳୟ ଘେନି
ପାପିବି ମଣ୍ଡନେ ନିତ ଦିବା ସନ୍ଧ୍ୟା ନିଶି ଅଣି ।"

ବଂଶୀ ନାମକ ଜଣେ ଗଡ଼ଜାତ ଅଞ୍ଚଳର ଛାତ୍ରଙ୍କୁ ଲକ୍ଷ୍ୟ କରି ତାଙ୍କର ମୃତ୍ୟୁରେ ବ୍ୟଥିତ କବି ଗୋଦାବରୀଶ ଲେଖିଥିଲେ,

"ମୁହିଁ ପାଖେ ବସି ରହିଲି, ଏତେ ନିଷ୍ଠୁର ପରି,
ନ ଦେଖିଲି ଉଡ଼ି ଯିବାର ଶେଷ ପବନ ଧାରି ।
ନିଜ ହାତେ ଘରୁ ଭୁଇଁରେ କରି ଦେଲି ଅନ୍ତର
ନିଜ କାନ୍ଧେ ବହି ନେଲି ମୁଁ କାହିଁ ବନ ଭିତର ।"

କଲିକତାରେ ଥିବାବେଳେ ସତ୍ୟବାଦୀ ବନ ବିଦ୍ୟାଳୟ ଶ୍ରୀପଞ୍ଚମୀ ପୂଜାର ସ୍ମୃତିକୁ ମନେ କରି ଶ୍ରୀପଞ୍ଚମୀ ସମୟରେ ଲେଖିଥିଲେ,

"ବହୁଦୂରେ ତେଜି ଆସିଛି ମୋର କନକପୁରୀ
ଜୀବନଦୁର୍ଲ୍ଲଭ ସମ୍ପଦ, ହୃଦ ନିସର୍ଗ ଶିରୀ ।
ବୀଣାପାଣି ମୂର୍ତ୍ତି ନିବେଶି ବଟ ଶ୍ୟାମଳ ତଳେ
ମୋ ପ୍ରାଣ ପସରା ଯେତେକ ଥିବେ ପୁଲକ ଭରେ ।"

ସତ୍ୟବାଦୀ ବନ ବିଦ୍ୟାଳୟରେ ଶିକ୍ଷକ ଥିବା ସମୟରେ ଛାତ୍ରମାନଙ୍କ ସହିତ ଆଦର୍ଶ ଜୀବନଯାପନ କରିବା ସମୟରେ ବିଭିନ୍ନ ଘଟଣାକୁ କେନ୍ଦ୍ର କରି କବି ଅନେକ କବିତା ଲେଖିଛନ୍ତି । ଏହି ସବୁ କବିତା ଗୁଡ଼ିକରେ କବିଙ୍କ ଅନ୍ତରର ବାଣୀ ଅତ୍ୟନ୍ତ ସରଳ ଭାବରେ ପ୍ରକାଶ ଲାଭକରି ଅଛି । କବିଙ୍କର ସମବେଦନଶୀଳ ହୃଦୟ ଅତ୍ୟନ୍ତ ସାଧାରଣ ଘଟଣାରେ ମଧ୍ୟ ଚକିତ ଓ ଚଞ୍ଚଳ ହୋଇ ପଡ଼ି ଅଛି । ଉପଯୁକ୍ତ କବି ହେବା ନିମିତ୍ତ ଅନ୍ତରର ଅନୁଭୂତି ଲାଗି ଯେଉଁ ଭାବର ଆବଶ୍ୟକ ତାହା ସେ

ଗୋଦାବରୀଶଙ୍କ ଠାରେ ପ୍ରଚୁରମାତ୍ରାରେ ଥିଲା, ଏଥିରେ ସନ୍ଦେହ ନାହିଁ । ଗୋଦାବରୀଶଙ୍କ ଶୋକ ଗୀତିକା ଶୋକୋଚ୍ଛ୍ୱାସର ବାଣୀ ପ୍ରଚୁର କରିବା ସଙ୍ଗେ, ସଙ୍ଗେ ପରଲୋକ ଗତ ଆତ୍ମାର ବିଷାଦମୟ ସ୍ମୃତି ଅଙ୍କନ କରିବାରେ ସମର୍ଥ । ତାଙ୍କର ଗୀତି-କବିତାରେ ଦାର୍ଶନିକତା ଓ ବୁଦ୍ଧିମତ୍ତା ଆବେଗ ଭିତରେ ହିଁ ଫୁଟି ଉଠିଛି । ଅନ୍ୟର ଦୁଃଖକୁ ନିଜ ହୃଦୟରେ ଅନୁଭବ କରି ଅନ୍ୟର ବିଚ୍ଛେଦରେ ନିଜର ପ୍ରାଣକୁ ଶୋକାକୁଳ କରି କବି ଯେଉଁ କବିତାଗୁଡ଼ିକ ଲେଖି ଯାଇଛନ୍ତି ସେ ଗୁଡ଼ିକ ତାଙ୍କ ମାନବବାଦର ସ୍ପଷ୍ଟ ପରିଚୟ ଦିଏ । ରୋମାଣ୍ଟିକ କବିରୂପେ ଗୋଦାବରୀଶଙ୍କର ପ୍ରାଧାନ୍ୟ ସ୍ୱୀକାର କରିବାର କଥା । ପ୍ରକୃତିର ଛନ୍ଦରେ ପ୍ରାଣ ସ୍ପନ୍ଦନ ଅନୁଭବ କରି କବି ଯେଉଁ ଭାବାବେଗର ପରିଚୟ ଦେଇଛନ୍ତି, ସେଥିଲାଗି ତାଙ୍କୁ ଇଂରେଜ କବି Words Worthଙ୍କ ସହିତ ତୁଳନା କରାଯାଏ । ସତ୍ୟବାଦୀର ଝୁରିଅନା କୁଞ୍ଜରେ କବି ଗୋଟିଏ ବୃକ୍ଷ ପାଖରେ ତାଙ୍କ ପ୍ରାଣର ଅବ୍ୟକ୍ତ ବେଦନା ପ୍ରକାଶ କରିବାକୁ ଲେଖିଛନ୍ତି—

"କପାଇଁ ତାକୁଛୁ ଏଭଳିରେ · ତରୁ
ପଦେ କହୁ ନାହୁଁ କଥା
ଯେତେ ମୁଁ ପଚୁରେ ଶୁଣୁ ନାହୁଁ କିଛୁ
ନାଡ଼ି ନରନ୍ତରେ ମଥା ।"

କେବଳ Words Worth ନୁହନ୍ତି P. B. Shelley ଙ୍କ ସହିତ ଗୋଦାବରୀଶଙ୍କର ଯଥେଷ୍ଟ ସାମ୍ୟ ରହିଛି । P, B. Shelley ଙ୍କ ପରି ତାଙ୍କର ଦେହ ମନ ଓ ବାକ୍ୟ ସ୍ୱର୍ଗୀୟ ମାଧୁରୀଯୁକ୍ତ ଏବଂ କଳ୍ପନା ଓ ଅନୁଭୂତି ଅଣାନ୍ତ୍ରିୟ । କାବ୍ୟକଳା ବିଷୟରେ Shelley ଙ୍କର ଯେପରି ଉଚ୍ଚଧାରଣା ଥିଲା

ଗୋଦାବରୀଶଙ୍କର ଠିକ୍ ସେହିପରି ଧାରଣା ଥିଲା । ଗୋଦାବରୀଶ ତାଙ୍କର ବନ୍ଧୁ କବିତାରେ ଇଂରେଜୀ ସାହିତ୍ୟର ରୋମାଣ୍ଟିକ୍ କବିମାନଙ୍କ ପରି ତାଙ୍କର ଅନ୍ତରର ଅବ୍ୟକ୍ତ କଥା ପାଠକ ସମ୍ମୁଖରେ ଉପସ୍ଥାପିତ କରିଛନ୍ତି । ପ୍ରକୃତିର ପ୍ରତ୍ୟେକ ସ୍ଥଳରେ ପ୍ରାଣ-ପ୍ରାଚୁର୍ଯ୍ୟ ଲକ୍ଷ୍ୟ କରି କବି 'ଜଳରେ ଅନଳ' କବିତାରେ ଲେଖିଛନ୍ତି,

"ଗୁରୁ ଊର୍ମିଳା କନକ ପୁଲକେ ନଗରି ଶିଖର ଶିରୀ
ଚପଳ ମାଧୁରୀ ମୋହନ ବିଳାସେ ଆସୁଥାଏ ଢଳ ଢଳ ।
ବରଷାର ଧାରା, ଆକାଶ ଅବନୀ ସକଳେ ଭସାଇ ଦେଇ,
ନିଜ ପିକ୍ତ ଘରେ ନମିଷେ ଦୋସର କିଏ ଅବା ନାହିଁ ଫେଇ ।"

ବସନ୍ତର ଆଗମନରେ କୋକିଳର କୁହୁଧ୍ୱନିରେ ବିମୋହିତ କବି ଗାଇଛନ୍ତି—

"ତୋ ଦ୍ୱାର ଭିକାରୀ ହୋଇଛୁ ମୁଁ ତନ୍ଦୁଁ
ବହି ଏ ହୃଦୟୁ ରିକ୍ତ
ଯେତେ ତୁ ଗାଇବୁ ପାରିବ ସାଇତି
ଭରି ନେବି ପ୍ରାଣେ ସବୁ କୁହୁ-ଗୀତ
ତୃଷିତ ଏ ବିଶ୍ୱେ, କରିବ ରେ ପିକ
ମୀରସ ଜୀବନ ସିକ୍ତ ।"

୧୯୧୯ ସାଲରେ ଚନ୍ଦ୍ରଧର ପୁରରେ ଓଡ଼ିଆ ସଂସ୍କୃତିକୁ ପୁନରୁଜ୍ଜୀବିତ କରିବାକୁ ଯାଇଥିବା ସମୟରେ ସଯୋଙ୍କ ନଦୀକୁ ଲକ୍ଷ୍ୟ କରି କବି ଲେଖିଛନ୍ତି ।

"ସଯୋଙ୍କ ଅବୋଧ ଗୀତିକା କଣ୍ଠେ ଭରିବ ବସି
ପ୍ରାନ୍ତର ଉପାନ୍ତେ ହେରିବ ଗିରି ଶିଖରରାଶି ।"

ସତ୍ୟବାଦୀ ଗୋଷ୍ଠୀର ଜଣେ କର୍ମୀ ହିସାବରେ ଗୋଦାବରୀଶଙ୍କର ତ୍ୟାଗପୂତ ସାଧନା ଯେତିକି ଉଜ୍ଜ୍ୱଳ, ଏ ଦେଶର ଭାଷା ଓ ସାହିତ୍ୟର ଜାତୀୟତା ଭିତ୍ତିରେ ବଳିଷ୍ଠ ବିକାଶ ନିମନ୍ତେ ସାଧନା ତାଠାରୁ ଅଧିକ ଗୌରବୋଜ୍ଜ୍ୱଳ । ଜାତିର ମହତ୍ତ୍ୱ ପ୍ରଚାର କରିବା ନିମିତ୍ତ ଭାଷା ଓ ସାହିତ୍ୟର ମହତ୍ତ୍ୱ ବଜାୟ ରଖିବା ନିତାନ୍ତ ଆବଶ୍ୟକ । ବିଦେଶୀ ବା ପଡ଼ୋଶୀ ଭାଷା ସାହିତ୍ୟର ଅନୁକରଣରେ କୌଣସି ଦେଶର ସାହିତ୍ୟ ସମୃଦ୍ଧି ଲାଭ କରିବା ଅସମ୍ଭବ । ଜାତିର ନିଜସ୍ୱ ଭାବନା, ଅନୁଭୂତି, ସାମାଜିକ ଜୀବନର ଚିତ୍ର, ନିତି ଦିନିଆଁ ଜୀବନର ଘଟଣା ପ୍ରବାହକୁ ସାହିତ୍ୟ ମୁକୁରରେ ପ୍ରତିଫଳିତ କରି ଜାତୀୟ ସାହିତ୍ୟର ଉନ୍ନତି ସାଧନ କରିବା ନିମିତ୍ତ ଗୋଦାବରୀଶ ଚେଷ୍ଟିତ ଥିଲେ । ତାଙ୍କର କଳିକା ଓ କଣଲେପୁରେ ସାର୍ବଜନୀନ ଓ ଚିରନ୍ତନ ଅନୁଭୂତିର ପ୍ରକାଶ ଯେପରି ଭାବରେ ହୋଇଅଛି, ଆଲେଖିକାରେ ବ୍ୟକ୍ତିତ୍ୱବୋଧ, ସମ୍ବେଦନଶୀଳ ସମାଜଚେତନାର ଭାବ ସେହିପରି ପ୍ରକାଶ ପାଇଛି । ଆଲେଖିକା ଏପରି ସର୍ବଜନାଦୃତ ଯେ, ଏହାକୁ ଲୋକସାହିତ୍ୟର ଅନ୍ତର୍ଭୁକ୍ତ କରାଯାଇ ପାରେ । ୧୯୧୮ ଠାରୁ ୧୯୨୧ ପର୍ଯ୍ୟନ୍ତ ବିଭିନ୍ନ ସମୟରେ ଆଲେଖିକାର ଗାଥା-କବିତାଗୁଡ଼ିକ ରଚିତ । ଆଲେଖିକାର ପ୍ରତ୍ୟେକ ଗାଥା-କବିତାରେ କବି ଯେଉଁ କିଂବଦନ୍ତୀ ଗୁଡ଼ିକୁ ରୂପାୟିତ କରିଛନ୍ତି, ସେଗୁଡ଼ିକ ଦ୍ୱାରା ଅଜ୍ଞାତ ଉତ୍କଳର ଗୌରବୋଜ୍ଜ୍ୱଳ ଇତିହାସର କେତେ ଗୋଟି ଛିନ୍ନ ପୃଷ୍ଠା ଉନ୍ମୋଚନ କରିବା ସଙ୍ଗେ ସଙ୍ଗେ ଉତ୍କଳୀୟ ଜୀବନର ମୌଳିକତା ପ୍ରଦର୍ଶନ କରିଅଛନ୍ତି ।

ଗାଥା-କବିତାକୁ ଇଂରେଜୀ ବାଲାଡ଼ (Ballad)ର ପ୍ରତିଶବ୍ଦରୂପେ ଗ୍ରହଣ କରି ନିଆଯାଇଥାଏ । ବାଲାଡ଼ ଶବ୍ଦଟି ଫରାସୀ **Ballet** ଶବ୍ଦରୁ ଉତ୍ପନ୍ନ । ନୃତ୍ୟ ସହିତ ଯେଉଁ କବିତା ଗାନ-

କରାଯାଉଥିଲା, ତାହାକୁ ଗାଥା-କବିତା କୁହାଯାଉଥିଲା । ଗାଥା-କବିତାର ପ୍ରକାଶଭଙ୍ଗୀ ଅତ୍ୟନ୍ତ ସରଳ ଓ ସାବଲୀଳ । ଏଥିରେ ଗୋଟିଏ ଗଳ୍ପଭାଗ ନିଶ୍ଚୟ ଥିବ । ଏହି ଗଳ୍ପ ଘାଟଣାପୂର୍ଣ୍ଣ କଥାବସ୍ତୁକୁ ଅବଲମ୍ବନ କରି ଗଢ଼ି ଉଠିଥାଏ । ଓଡ଼ିଆ ଭାଷାରେ ପ୍ରାଚୀନ କାଳରୁ ଅନେକ ଗାଥା-କବିତା ଦେଖାଯାଏ । ଖୁଦୁରୁକୁଣୀ ଓଷା, ଗୋବିନ୍ଦଚନ୍ଦ୍ର କଥା ପ୍ରାଚୀନ ଓଡ଼ିଆ ଗାଥା-କବିତାର ନିଦର୍ଶନ । ମାତ୍ର ଏ ଗୁଡ଼ିକ ଧର୍ମ ଭାବକୁ କେନ୍ଦ୍ରକରି ଗଠିତ । ପ୍ରାଚୀନ କାଳରୁ ଏହିରୂପେ ପ୍ରଚଳିତ ହୋଇ ଆସୁଥିବା ଗାଥା-କବିତା ଗୋଦାବରୀଶଙ୍କ ହାତରେ ଅନ୍ୟ ଏକ ରୂପରେ ମାର୍ଜିତ ରୁଚିରେ ପ୍ରକାଶ ପାଇଲା । ତାଙ୍କର କାଳିଜାଈ, ଅଭିରାମ ସିଂହ ପ୍ରଭୃତି ବିଭିନ୍ନ କବିତାରେ ଏହା ଲକ୍ଷ୍ୟ କରିବାର କଥା । ଗୋଦାବରୀଶ ମିଶ୍ରଙ୍କ ପରେ ଆଧୁନିକ ଓଡ଼ିଆ ଗାଥା-କବିତା ରାଧା ମୋହନ ଗଡ଼ନାୟକଙ୍କ ଦ୍ୱାରା ବିଶେଷ ଭାବରେ ସୃଷ୍ଟି ହୋଇଅଛି । ତାଙ୍କର ସୁରଣିକା ଓ ଉତ୍କଳିକାରେ ଆଧୁନିକ ଗାଥା-କବିତାର ପ୍ରକାଶ ହୋଇଅଛି । ଗାଥା-କବିତାର କେତେଗୁଡ଼ିଏ ନିର୍ଦ୍ଦିଷ୍ଟ ରୀତି ଅଛି । ଏହାର ବର୍ଣ୍ଣନାରେ ପ୍ରାଞ୍ଜଳତା-ରହିବ ଏବଂ କଥାବସ୍ତୁର ଗତି ଦ୍ରୁତ ହେବ । ଅନାବଶ୍ୟକ ଓ ଅବାନ୍ତର ବର୍ଣ୍ଣନାର ସ୍ଥାନ ଏଥିରେ ନାହିଁ । ଏହାର ରୂପାୟନ ବାସ୍ତବ ଭିତ୍ତିରେ ହେବ । ଏହାର ରଚନାଭଙ୍ଗୀ ନାଟକୀୟ ଛଟାରେ ହେବ । ଏଥିରେ ପ୍ରସଙ୍ଗକ୍ରମେ ଅତି—ପ୍ରାକୃତ ଘଟଣା ରହିବ । ଗୋଟିଏ ବିଷୟର ଗୋଟିଏ ପ୍ରସଙ୍ଗ ପରେ ଅନ୍ୟ ଗୋଟିଏ ପ୍ରସଙ୍ଗର ଦ୍ରୁତ ଅବତାରଣା ରହିବ । ଏଥିରେ ପ୍ରାଚୀନ ପ୍ରବଚନର ପ୍ରକାଶ ରହିବ । ଏହି ସବୁ ଲକ୍ଷଣ ଗୁଡ଼ିକ ବିଚାର କଲେ ଗୋଦାବରୀଶଙ୍କର ଗାଥା-କବିତାରେ ଏ ଗୁଡ଼ିକ ପୂର୍ଣ୍ଣମାତ୍ରାରେ ରହିଛି ।

ଗୋଦାବରୀଶଙ୍କ କବିତାକୁ ୯ଟି ବିଭାଗରେ ଅନ୍ତର୍ଭୁକ୍ତ କରାଯାଇଛି । କଳିକାରେ କବିଙ୍କ ଜୀବନର ବିଭିନ୍ନ ଅନୁଭୂତିକୁ ନେଇ ୬୦ ଗୋଟି କବିତା ସନ୍ନିବେଶିତ କରାଯାଇଅଛି । ପ୍ରତ୍ୟେକ କବିତାରେ କବି ଜୀବନର ଅନୁଭୂତି ଓତଃପ୍ରୋତ ଭାବରେ ଜଡ଼ିତ । କବିତାଗୁଡ଼ିକର ଭାଷା ଅତ୍ୟନ୍ତ ସରଳ ଓ ହୃଦୟଗ୍ରାହୀ । ସେହିପରି କିଶଳୟରେ ୬୦ ଗୋଟି କବିତାର ସମାବେଶ କରାଯାଇ ଅଛି । କଳିକା ଏବଂ କିଶଳୟର କେତେକ କବିତା ବିଷୟରେ ପୂର୍ବରୁ ଆଲୋଚନା କରାଯାଇଅଛି । ଆଲେଖିକା ଗୋଦାବରୀଶଙ୍କର ୧୦ ଗୋଟି ଗାଥା-କବିତାର ସମାବେଶ । ଉତ୍କଳରେ ପ୍ରଚଳିତ ଥିବା ୧୦ଗୋଟି ଜନପ୍ରିୟ କିମ୍ବଦନ୍ତୀକୁ ଅବଲମ୍ବନ କରି ଏହି ଗାଥା-କବିତା ଗୁଡ଼ିକ ଲେଖା ଯାଇଅଛି । 'ଚୟନିକା'ରେ ୪୩ଗୋଟି କବିତାର ସଂକଳନ କରାଯାଇଅଛି । ଚୟନିକାରେ ଥିବା କବିତାଗୁଡ଼ିକ ଇଂରେଜୀରୁ ଅନୁବାଦ କରାଯାଇ ଅଛି । ସତ୍ୟବାଦୀ ବନ-ବିଦ୍ୟାଳୟରେ ୧୯୧୬ ଓ ୧୯୧୭ ସାଲରେ ଗୋଦାବରୀଶ ପ୍ରଧାନଶିକ୍ଷକ ଥିବା ସମୟରେ ବିଦ୍ୟାଳୟର ଉଚ୍ଚ ଶ୍ରେଣୀରେ ଇଂରେଜୀ ଅଧ୍ୟାପନା କରୁଥିଲେ । ପ୍ରଧାନଶିକ୍ଷକ ନ ଥିବା ସମୟରେ ମଧ୍ୟ ବିଦ୍ୟାଳୟରେ ସେ ଇଂରାଜୀ ଅଧ୍ୟାପନା କରୁଥିଲେ । ସେ ସମୟରେ ଯେଉଁ ସବୁ ଇଂରାଜୀକବିତା ପଢ଼ା ହେଉଥିଲା, ସେହି-ଗୁଡ଼ିକୁ କବି ଓଡ଼ିଆରେ ଅନୁବାଦ କରିଛନ୍ତି । ଇଂରେଜୀ କବିତା ଗୁଡ଼ିକୁ ଓଡ଼ିଆରେ ଅନୁବାଦ କରିବା ସମୟରେ କବି ଓଡ଼ିଶାର ବାୟୁମଣ୍ଡଳ ଓ ପରିସର ଭିତରେ ସେଗୁଡ଼ିକୁ ଯଥାର୍ଥ ରୂପ ଦାନ କରିଅଛନ୍ତି । ଥୋମାସ୍ କ୍ୟାମ୍ପ ବେଲ୍‌ଙ୍କର 'ଲର୍ଡ଼୍ ଅଲିନ୍‌ସ ଡଟର୍' କବିତାକୁ କବି 'କନକା ନୃପକୁମାରୀ' ନାମ ଦେଇ ଅନୁବାଦ କରିଅଛନ୍ତି । ସେହିପରି ସାର ଓ୍ୱାଲଟର୍ ସ୍କଟଙ୍କର 'ଲୁଲବି

ଅଫ୍ ଆନ୍ ଇନଫ୍ୟାଣ୍ଟ୍ ଗୃଇଲ୍ଡ୍' କବିତାକୁ ଅନୁବାଦ କରି 'ଜୁନ ହୁଅ' ବୋଲି ନାମ ଦେଇଛନ୍ତି । ଏହି ଅନୁବାଦରେ କବିଙ୍କର କମନୀୟ ଭାଷାରେ ଭାବର ମୌଳିକତା ରକ୍ଷିତ ହୋଇ ପାରିଅଛି । ଜେମସ୍ ହେନରୀ ଲେହେଣ୍ଟ୍ଙ୍କର ଆବୁବେନ୍ ଆଧେମ୍ ଓ ଉଇଲିୟମ୍ ଓ୍ୱାର୍ଡ଼୍ସ ଓ୍ୱାର୍ଥଙ୍କର 'ଟୁ ଦି କୁକ୍' କବିତା ସେହିପରି ଯଥାକ୍ରମେ ନରନାରାୟଣ ଓ କୋଇଲି ନାମରେ ପ୍ରକାଶ ପାଇଛି । ଇଂରେଜୀ ମୂଳ କବିତାକୁ ଆଖି ଆଗରେ ରଖି ଗୋଦାବରୀଶଙ୍କ ଅନୁବାଦକୁ ବିଚାର କଲେ ଅନୁବାଦ ଭିତରେ ତାଙ୍କର କବିପ୍ରତିଭାର ପରିଚୟ ମିଳିବ । ଓଡ଼ିଆ ସାହିତ୍ୟରେ ଆଧୁନିକ ଯୁଗରେ ଅନୁବାଦର ଆବଶ୍ୟକ ଥିବା ସମୟରେ ଗୋଦାବରୀଶଙ୍କର ଏହି ଅନୁବାଦ ଗୁଡ଼ିକ ଓଡ଼ିଆ ସାହିତ୍ୟକୁ ଯେ ଯଥେଷ୍ଟ ସାହାଯ୍ୟ କରିଅଛି, ଏକଥା ସ୍ୱୀକାର କରିବାର କଥା । 'କୁସୁମ'ରେ ୨୧ ଗୋଟି କବିତା ସ୍ଥାନ ପାଇଛି । ୧୯୧୯ ସାଲରେ ଗୋଦାବରୀଶ ବିଚ୍ଛିନ୍ନ ଓଡ଼ିଆ-ଅଞ୍ଚଳରେ ଓଡ଼ିଆ ଭାଷାର ପ୍ରଚାର ପାଇଁ ଚକ୍ରଧରପୁର ଯାଇଥିଲେ । ସେଠାରେ ନାନା ଅଭାବ ଅସୁବିଧା ସତ୍ତ୍ୱେ ଗୋଟିଏ ହାଇସ୍କୁଲ ପ୍ରତିଷ୍ଠା କରି ଗୋଦାବରୀଶ ତାର ପ୍ରଧାନ ଶିକ୍ଷକ ହୋଇଥିଲେ । ଏହି ବିଚ୍ଛିନ୍ନ ଅଞ୍ଚଳରେ କାର୍ଯ୍ୟ କରୁଥିବା ସମୟରେ କବି ଏହି ୨୧ ଗୋଟି କବିତା ଲେଖିଥିଲେ । 'କବିତାୟନ'ରେ ୨୩ଗୋଟି କବିତା ସ୍ଥାନ ପାଇଛି । ଏହାର ଅଧିକାଂଶ କବିତା ଗୋଦାବରୀଶଙ୍କର କାରା ଜୀବନର ସୃଷ୍ଟି । ଇଂରେଜଶାସନ ସମୟରେ ଏ ଦେଶର ଲୋକେ କିପରି ଭାବରେ ନ୍ୟାୟ ବିଚାର ପାଉଥିଲେ, କାରାଗାରରେ ବନ୍ଦୀ କିପରି ବ୍ୟବହାର ପାଉଥିଲି, ଏ ସବୁର ମର୍ମସ୍ପର୍ଶୀ ଚିତ୍ର ଏହି କବିତାଗୁଡ଼ିକରୁ ମିଳେ । ୧୯୨୬-୨୭ ସାଲରେ ଏଗୁଡ଼ିକ ରଚିତ ହୋଇଥିବାର ଜଣାଯାଏ । ଏହି

କବିତାମାନଙ୍କ ମଧ୍ୟରୁ କେତେକ କିମ୍ବଦନ୍ତୀକୁ ଆଶ୍ରୟ କରି ଲେଖାଯାଇଛି । ପୁଣି ଏହି କବିତା ଗୁଡ଼ିକରୁ କବିଙ୍କର ପ୍ରକୃତି ଚିତ୍ରଣରେ ପାରଦର୍ଶିତା ଉପଲବ୍ଧ ହୁଏ । 'ଗୀତାୟନ'ରେ ୨୮ ଗୋଟି କବିତା ସ୍ଥାନ ପାଇଅଛି । ଏହି କବିତାଗୁଡ଼ିକ କବି ଜୀବନର ବିଭିନ୍ନ ଅନୁଭୂତିର ସ୍ମୃତିମୂଳକ କବିତା ବୋଲି କହିଲେ ଭୁଲ୍ ହେବ ନାହିଁ । ୧୯୫୩ ମସିହାରେ ଗୀତାୟନ ପୁସ୍ତକାକାରେ ପ୍ରକାଶ ପାଇଥିଲା । 'ଗୀତି ଗୁଚ୍ଛ'ରେ ସେହିପରି ୨୮ଗୋଟି ଅନୁଭୂତିସମ୍ବଳିତ କବିତା ପ୍ରକାଶ ପାଇଛି । ଏହାର କେତେକ କବିତା କିମ୍ବଦନ୍ତୀକୁ ଆଶ୍ରୟ କରି ଲେଖାଯାଇଛି । 'ଗୋଦାବରୀଶ ଗ୍ରନ୍ଥାବଳୀ'ରେ 'ଗୀତିଗୁଚ୍ଛ' ନାମକ ଯେଉଁ ୨୮ ଗୋଟି କବିତା ସ୍ଥାନ ପାଇଛି, ସେ ଗୁଡ଼ିକ ପୂର୍ବରୁ ଅପ୍ରକାଶିତ ଥିଲା ।

୧୯୨୭ରୁ ଆରମ୍ଭ କରି ୧୯୫୭ ମସିହା ପର୍ଯ୍ୟନ୍ତ ପ୍ରାଥମିକ ଓ ଉଚ୍ଚପ୍ରାଥମିକ ସ୍କୁଲଙ୍କ ପାଇଁ ରଚନା କରିଥିବା ୬୭ ଗୋଟି କବିତା ଗୋଦାବରୀଶ ଗ୍ରନ୍ଥାବଳୀରେ 'ଶିଶୁ କବିତା' ନାମରେ ପ୍ରକାଶ ପାଇଅଛି । କୋମଳମତି ଶିଶୁମାନଙ୍କ ପାଇଁ ସରଳ ଭାଷାରେ ସାରଗର୍ଭକ ଉପଦେଶପୂର୍ଣ୍ଣ କବିତା ହିସାବରେ ଏଗୁଡ଼ିକର ଯଥେଷ୍ଟ ମୂଲ୍ୟ ଅଛି । ଓଡ଼ିଆ ସାହିତ୍ୟରେ ଶିଶୁ ସାହିତ୍ୟର ଅଭାବ ଥିବା ସମୟରେ ଏହି କବିତାଗୁଡ଼ିକ ଶିଶୁ ସାହିତ୍ୟ ବିଭାଗକୁ ସମୃଦ୍ଧ କରିଅଛି ।

ଗୋଦାବରୀଶଙ୍କର କବି ଜୀବନର ସାଧନା ବିଷୟରେ ଅନୁଶୀଳନ କଲେ ସେ ସତ୍ୟବାଦୀ ଯୁଗର ସାଧକ ହିସାବରେ ନୁହେଁ, ଆଧୁନିକ ଓଡ଼ିଆ ସାହିତ୍ୟରେ ଗୀତି କବିତା ଓ ଗାଥା କବିତାର ସ୍ରଷ୍ଟା ରୂପେ ଏକ ଶ୍ରେଷ୍ଠ କବିର ଆସନର ଯୋଗ୍ୟ । ତାଙ୍କର କବିତା

ଗୁଡ଼ିକରେ ଜାତୀୟ ଭାବ ସହିତ ଯେକୌଣସି ମାନବର ଆନ୍ତରିକ ଭାବର ପ୍ରତିଫଳନ ତାଙ୍କୁ ଏକ ବିଶିଷ୍ଟ ମାନବବାଦୀ ରୂପେ ପରିଚିତ କରାଇଅଛି । ବିଭିନ୍ନ ଆଖ୍ୟାୟିକା ବା କିମ୍ବଦନ୍ତୀର ଅନୁସରଣରେ ସେ ଯେଉଁ ଗାଥା କବିତା ଗୁଡ଼ିକ ସୃଷ୍ଟି କରିଅଛନ୍ତି, ସେଗୁଡ଼ିକ ଏ ଜାତିର ଗୌରବାବହ ଘଟଣା ପ୍ରଚୁରରେ ଶତମୁଖ ହୋଇ ପଡ଼ିଛନ୍ତି । ତେଣୁ କବି ଗୋଦାବରୀଶଙ୍କର ସାହିତ୍ୟ ସାଧନା ଏ ଜାତିର ସାରସ୍ୱତ ପୀଠରେ ଏକ ଉଜ୍ଜ୍ୱଳ ଆଲୋକ-ବର୍ତ୍ତିକା ।

**୫-ଗୋଦାବରୀଶଙ୍କର ଉପନ୍ୟାସ**—ଓଡ଼ିଆ ସାହିତ୍ୟରେ ଫକୀର ମୋହନଙ୍କର ସାର୍ଥକ ଉପନ୍ୟାସ ସୃଷ୍ଟି ପରେ ଆଜି ଯେଉଁ କେତେ ଖଣ୍ଡ ଉପନ୍ୟାସ ପ୍ରକାଶ ପାଇଥିଲି, ସେଗୁଡ଼ିକ ଓଡ଼ିଆ ସାହିତ୍ୟର ଶ୍ରୀବୃଦ୍ଧି ସମ୍ପାଦନ କରିବାରେ ସାହାଯ୍ୟ କଲେହେଁ ସେଭଳି ଉଲ୍ଲେଖଯୋଗ୍ୟ ଅବସ୍ଥା ସୃଷ୍ଟି କରି ନାହାନ୍ତି । ରାଧାନାଥ ଯୁଗ ପରେ ସତ୍ୟବାଦୀ ଯୁଗରେ ସାହିତ୍ୟର ଅନ୍ୟାନ୍ୟ ବିଭାଗ ସହିତ ଉପନ୍ୟାସ ସାହିତ୍ୟର ଶ୍ରୀବୃଦ୍ଧି ସମ୍ପାଦନ କରିବା ନିମିତ୍ତ ଗୋଦାବରୀଶ ଚେଷ୍ଟିତ ଥିଲେ । ସେ ଯେତେଗୋଟି ଉପନ୍ୟାସ ରଚନା କରିଛନ୍ତି, ପ୍ରତ୍ୟେକ ପାଇଁ ଇଂରେଜୀ ଉପନ୍ୟାସକୁ ଅବଲମ୍ବନ କରିଛନ୍ତି । ତାଙ୍କର 'ଘଟାନ୍ତର' ଉପନ୍ୟାସ ରବର୍ଟ ଲୁଇସ୍ ଷ୍ଟିଭେନ୍‌ସନ୍‌ଙ୍କର "Dr. Jekyll and Mr. Hyde"ର ଅବଲମ୍ବନରେ ଲିଖିତ । ଏହି ଉପନ୍ୟାସଟି ଏପରି ଭାବରେ ଲେଖା ଯାଇଛି ଯେ, ଏହାକୁ ଅନ୍ୟ ଭାଷାର ପୁସ୍ତକର ଅବଲମ୍ବନରେ ଲିଖିତ ବୋଲି ସହଜରେ ଜାଣିହେବ ନାହିଁ । ଲେଖକ ଓଡ଼ିଶାର ପରି-ବେଷ୍ଟନୀ ଭିତରେ ସମଗ୍ର ଉପନ୍ୟାସର କଥାବସ୍ତୁକୁ ଅତ୍ୟନ୍ତ ବିଚକ୍ଷଣତାର ସହିତ ଚିତ୍ରଣ କରିଛନ୍ତି । ମୂଳ ଉପନ୍ୟାସର Dr. Jekyllଙ୍କୁ ସେ ଡାକ୍ତର ନାୟକ ରୂପେ ଓ Mr. Hydeଙ୍କୁ

ସନ୍ଦେଇ ଜେନା ରୂପେ ଗ୍ରହଣ କରିଛନ୍ତି । ଚରିତ୍ର ଚିତ୍ରଣରେ ସ୍ୱାଭାବିକତା ବା ମୌଳିକତା ରକ୍ଷା କରିବା ନିମନ୍ତେ ସେ ସମର୍ଥ ହୋଇଛନ୍ତି । କଥା ବା କାହାଣୀରୂପେ ଏହି ଉପନ୍ୟାସଟି ସୁଖପାଠ୍ୟ ହୋଇଛି, ଏଥିରେ ସନ୍ଦେହ ନାହିଁ । ସର୍ବୋପରି ଲେଖକଙ୍କର ସହଜ ବୋଧ ଶୈଳୀ ଉପନ୍ୟାସକୁ ଆଦୃତ କରିପାରିଛି ।

ଫରାସୀ ଔପନ୍ୟାସିକ Victor Hugoଙ୍କର "Les Miserable" ଉପନ୍ୟାସର ଅବଲମ୍ବନରେ 'ଅଭାଗିନୀ' ଉପନ୍ୟାସ ରଚିତ । ଏହି ଉପନ୍ୟାସରେ ଫରାସୀ ବାୟୁମଣ୍ଡଳ ଯେପରି ଭାବରେ ଓଡ଼ିଶାରେ ଆରୋପିତ ହୋଇଛି, ତାହା ଲକ୍ଷ୍ୟ କରିବାର କଥା । ଏହି ଉପନ୍ୟାସଟି କଳେବର ଦୃଷ୍ଟିରୁ ବୃହତ୍ ।

'୧୮୧୭' ଓଡ଼ିଶାର ଐତିହାସିକ କଥାବସ୍ତୁର ରୂପାୟନ ହେଲେହେଁ ଏହାର ରଚନାପାଇଁ ଲେଖକଙ୍କୁ ଇଂରେଜୀ ଉପନ୍ୟାସ "The Tale of Two Cities" ଉପରେ ନିର୍ଭର କରିବାକୁ ପଡ଼ିଛି । କେବଳ ଏତିକି ଲକ୍ଷ୍ୟ କରିବାର କଥା ଯେ, ବକ୍ସି ଜଗବନ୍ଧୁ ଚରିତ୍ରଟି ଓଡ଼ିଶା ଇତିହାସର ନିଜସ୍ୱ । ତା ଛଡ଼ା ଅନ୍ୟାନ୍ୟ ଐତିହାସିକ ଚରିତ୍ରଗୁଡ଼ିକ କଥାବସ୍ତୁର ଯଥା ସ୍ଥାନରେ ନିର୍ଦ୍ଦିଷ୍ଟ ଭାବରେ ସ୍ଥାନ ପାଇଛନ୍ତି । ଓଡ଼ିଶାରେ ବକ୍ସି ଜଗବନ୍ଧୁଙ୍କର ଖାଦ୍ରୋଚିତ ବିପ୍ଳବ ଏକ ଐତିହାସିକ ଉଲ୍ଲେଖଯୋଗ୍ୟ ଘଟଣା ହୋଇଥିବାରୁ ଅନେକ ସମୟରେ ପାଠକମାନେ '୧୮୧୭'କୁ ଗୋଦାବରୀଶଙ୍କର ନିଜସ୍ୱ ରୂପେ ଗ୍ରହଣ କରନ୍ତି । ଏଥିରେ ଇଂରେଜ ସରକାରଙ୍କର ଦୁରଭିସନ୍ଧି, ଷଡ଼ଯନ୍ତ୍ର, ଆକ୍ରମଣ ଏବଂ ଓଡ଼ିଆ ପାଇକର ଜନ୍ମଭୂମି ଲାଗି ଆତ୍ମୋତ୍ସର୍ଗ କରିବାର ଉଜ୍ଜ୍ୱଳ ଆଦର୍ଶ ପ୍ରକାଶ ପାଇଛି ।

"ନବାସିତ" ଉପନ୍ୟାସ ସେହିପରି ଗୋଟିଏ ଇଂରେଜୀ ଉପନ୍ୟାସର ଅବଲମ୍ବନରେ ଲିଖିତ । ସେଥିରେ ଲେଖକ ପୂର୍ବପରି ଓଡ଼ିଶାର ପରିବେଷ୍ଟନୀର ଚିତ୍ର ଅଙ୍କନ କରିବାରେ ସିଦ୍ଧହସ୍ତତା ପ୍ରଦର୍ଶନ କରିଛନ୍ତି । ପୁସ୍ତକର କଥାବସ୍ତୁକୁ ବାସ୍ତବ ଦୃଷ୍ଟିରୁ ବିଚାର କଲେ ନିତାନ୍ତ ଅବାନ୍ତର ମନେ ହୁଏ ସତ; ମାତ୍ର ଓଡ଼ିଶାର ଯୁବପ୍ରାଣରେ ବୈଜ୍ଞାନିକ ଚେତନା ଖେଳାଇଦେବା ନିମିତ୍ତ ଲେଖକଙ୍କ ଉଦ୍ଦେଶ୍ୟ ପ୍ରକାଶ ପାଇଛି ।

ଗୋଦାବରୀଶଙ୍କର ଉପରୋକ୍ତ ଚାରି ଗୋଟି ଉପନ୍ୟାସର ରଚନାକାଳ ଭିତରେ ଜଣାପଡ଼େ ଯେ 'ଅଭାଗିନୀ' ଉପନ୍ୟାସକୁ ଛାଡ଼ି ଦେଲେ ଅନ୍ୟ ୩ଗୋଟି ଉପନ୍ୟାସ ୧୯୪୭ଠାରୁ ୧୯୫୧ ଭିତରେ ଲିଖିତ । 'ଅଭାଗିନୀ' ଉପନ୍ୟାସ ଏମାନଙ୍କ ପୂର୍ବରୁ ୧୯୨୨ ମସିହାରେ ଲିଖିତ । ଗୋଦାବରୀଶଙ୍କର ମୌଳିକ ଚିନ୍ତାଧାରା, କଳ୍ପନାଶକ୍ତି ଯଥେଷ୍ଟ ଥିଲେହେଁ ସେ ଉପନ୍ୟାସ ରଚନା କରିବା ନିମିତ୍ତ ନିଜ ମନରୁ କଥାବସ୍ତୁ ଗ୍ରହଣ କରିନାହାନ୍ତି । ବିଦେଶୀ ଉପନ୍ୟାସରୁ କଥାବସ୍ତୁ ଗ୍ରହଣ କରି ନିଜର ଅନୁପମ ପ୍ରତିଭାବଳରେ ଓଡ଼ିଶାର ପାରିପାର୍ଶ୍ୱିକ ଅବସ୍ଥିତି ସହିତ ସମତା ରଖି ଏପରି ଭାବରେ ଉପନ୍ୟାସ ଗୁଡ଼ିକୁ ସେ ରଚନା କରିଛନ୍ତି ଯେ, ପାଠକ ଉପନ୍ୟାସର ପ୍ରତ୍ୟେକ ପୃଷ୍ଠାରୁ ତାଙ୍କର ମୌଳିକତା ଉପଲବ୍ଧି କରେ । ଇଂରେଜୀ ଉପନ୍ୟାସରେ ଚରିତ୍ର ଗୁଡ଼ିକ ଯେପରି ଭାବେ ଚିତ୍ରିତ, ଠିକ୍ ସେହିପରି ଭାବରେ ଓଡ଼ିଆ ଭାଷାରେ ଚିତ୍ରଣ କରିବା ସମ୍ଭବ ହେଲେହେଁ ଓଡ଼ିଆ ପାଠକ ନିକଟରେ ପରିବେଷଣ କରିବା ଅସମ୍ଭବ । ତେଣୁ ଚରିତ୍ରଗୁଡ଼ିକ ଏଇ ଓଡ଼ିଶାର ପାଣି ପବନରେ ଗଢ଼ି ଉଠିଛନ୍ତି । ବର୍ଣ୍ଣନାଶୈଳୀ ବିଷୟରେ ବିଚାର କରିବାକୁ ଗଲେ କେବଳ ଗୋଦାବରୀଶଙ୍କ ସୁଖବୋଧ ଶୈଳୀର ହିଁ ପରିଚୟ ମିଳେ ।

ବର୍ଣ୍ଣନାଭଙ୍ଗୀ ଏପରି ସହଜ ଓ ସାବଲୀଳ ଯେ, ଯେକୌଣସି ସାଧାରଣ ପାଠକ ଉପନ୍ୟାସ ଗୁଡ଼ିକର ଭାବ ସହଜରେ ବୁଝିବାକୁ ସମର୍ଥ ହୁଏ ।

ଜାତୀୟ ଚେତନାର ଅଭିବୃଦ୍ଧି ସମ୍ପାଦନ କରିବା ନିମିତ୍ତ ଗୋଦାବରୀଶଙ୍କ ପ୍ରତିଭାର ବିକାଶ "୧୮୧୭"ରେ ଯେପରି ଭାବରେ ପ୍ରକାଶ ଲାଭ କରିଛି, ତାହା ଅନନ୍ୟସାଧାରଣ । ଅନେକ ସ୍ଥାନରେ କେବଳ ଜାତିର ମହତ୍ତ୍ୱ ପ୍ରଖ୍ୟାପନରେ ଲେଖକ ଚେଷ୍ଟିତ ହୋଇ-ଥିବା ଯୋଗୁଁ ଐତିହାସିକ ସତ୍ୟକୁ ଗ୍ରହଣ କରି ସୁଦ୍ଧା ଘଟଣା ବର୍ଣ୍ଣନାରେ ବ୍ୟତିକ୍ରମ ସୃଷ୍ଟି କରିଛନ୍ତି । '୧୮୧୭'କୁ ସମାଲୋଚକଗଣ ଏକ ଐତିହାସିକ ଉପନ୍ୟାସ ରୂପେ ଗ୍ରହଣ କରିଛନ୍ତି ।

**୭-ଗୋଦାବରୀଶଙ୍କ କ୍ଷୁଦ୍ର ଗଳ୍ପ**—ଗୋଦାବରୀଶଙ୍କ ଲେଖନୀରୁ ୩ଟି ଗଳ୍ପ ସଂକଳନ ଆତ୍ମପ୍ରକାଶ କରିଛି । ସେଗୁଡ଼ିକ ଯଥାକ୍ରମେ 'ଗଳ୍ପମାଳା' 'ପୁଅଣିଘର' ଓ 'ନଅଟି ଗଳ୍ପ' । ଗଳ୍ପ-ମାଳାରେ ପରଦାନସୀନ, ପାଣ୍ଡୁ ମିଶ୍ରେ, ତୋଳା କନ୍ୟା, ବିଧବା କନ୍ୟା, ବନ୍ଦୀ, ଦାମ୍ଭିକ ବନ୍ଧୁ, ସାବତ ପୁଅ, ନାରୀର ଗତି, ବରଯାତ୍ରୀ, ଭାଇଭାଗ ଓ ବଡ଼ପୁଅ ନାମକ ଏଗାର ଗୋଟି ଗଳ୍ପ ସ୍ଥାନ ପାଇଅଛି । ଏହି ଗଳ୍ପ ଗୁଡ଼ିକରେ ଆମ ସମାଜରେ ଘଟିଥିବା ନିତିଦିନିଆ ଘଟଣାଗୁଡ଼ିକ ସମସ୍ୟାମୂଳକ ଭାବରେ ସ୍ଥାନ ପାଇଅଛି । ନାରୀ ଜୀବନର ସାମାଜିକ ଘାତ ପ୍ରତିଘାତ ଉପରେ ଲେଖକ ବିଶେଷ ଭାବରେ ଜୋର ଦେଇଛନ୍ତି । ପରଦାନସୀନ ଗଳ୍ପରେ ସରୋଜିନୀ ଚରିତ୍ର ଆଧୁନିକ ନାରୀର ଏକ ବାସ୍ତବ ଆଦର୍ଶରୂପ ।

କୁସଂସ୍କାରରେ ବିଶ୍ୱାସ ନ କରି ମାର୍ଜିତ ଜୀବନରେ ବିଶ୍ୱାସ ରଖି ସରୋଜିନୀ ନିଜ ଗ୍ରାମରେ ଯେଉଁମାନଙ୍କର ଅପ୍ରିୟପାତ୍ର ହୋଇ ନିନ୍ଦା ଓ ଦୁର୍ନାମ ପାଇଥିଲି, ଶେଷରେ ସେହିମାନଙ୍କର ସାମାଜିକ

ଅବଧାରଣରେ ସାହାଯ୍ୟ କରିବାକୁ ସେ ଧାଇଁଆସିଛନ୍ତି । ସର୍ବୋଜ୍ଜ୍ୱଳ ଚରିତ୍ରର ମହାନ୍ତ ପାଖରେ ସମସ୍ତେ ନିଜର ଗୌଣତ୍ୱ ସ୍ୱୀକାର କରିଛନ୍ତି । କେବଳ ପରିଦାନଶୀଳ ହେଲେ ନାରୀର ମହତ୍ତ୍ୱ ରହେନାହିଁ । ବରଂ ଯେଉଁମାନେ ପରିଦାନଶୀଳ ହୋଇ ରହନ୍ତି, ସେହିମାନଙ୍କ ଜୀବନରେ ସ୍ଖଳନର ମାତ୍ରା ବହୁତ ବେଶୀ । ପାଣୁ ମିଶ୍ରେ ଗଳ୍ପଟି ଲେଖକଙ୍କର ଏକ ଅନୁଭୂତି ମିଶ୍ରିତ କଳ୍ପନା ପ୍ରବଣତାର ଉଦାହରଣ । ଦାମୋଦର ଷମାତାର ଅତ୍ୟାଗ୍ରହରେ ଘର ଗୁଡ଼ ଷ୍ଟେସନରେ ପାନ ବଡ଼ ସିଗାରେଟ୍ ଡାକନ୍ତି ନିଜ ମାମୁଁଙ୍କ ନାମ 'ପାଣୁ ମିଶ୍ରେ'ର ଭ୍ରମରେ ପଡ଼ି ଗାଡ଼ିରେ ଚଢ଼ି ଦେଶାନ୍ତରୀ ହେବା ପରେ ତାର ଭାଗ୍ୟର ପରିବର୍ତ୍ତନର ସୂତ୍ରପାତ ହୋଇଥିଲା । ଆମର ସାମାଜିକ ଜୀବନରେ କନ୍ୟାର ଦାୟ କିପରି କୁଫଳ ଦେଉଅଛି, ତାର ଉଦାହରଣ 'ତୋଳା କନ୍ୟା' । 'ବିଧବା କନ୍ୟା' ଗଳ୍ପରେ ଲେଖକଙ୍କର କଳ୍ପନାଶକ୍ତି ବିଶେଷ ଭାବରେ ପ୍ରକାଶ ପାଇଛି । 'ବନ୍ଦୀ' ଗଳ୍ପଟି ସେ ସମୟର ଜଣେ ନିଷ୍ଠାପର କର୍ମୀ ବିରୁଦ୍ଧରେ ସମାଜରେ କିପରି ଷଡ଼ଯନ୍ତ୍ର କରି ଯାଇପାରେ, ତାର ଉଦାହରଣ । ନୀଳାମ୍ବର ନିଷ୍ଠାପର ଭାବରେ କର୍ମ କରି ଲୋକ ସାଧାରଣଙ୍କ ଦୁର୍ଦ୍ଦଶା ଦୂର କରିବାକୁ ଚେଷ୍ଟା କରୁଥିବାବେଳେ ଲୋକ ସାଧାରଣ ହିଁ ତାଙ୍କ ବିରୁଦ୍ଧରେ କାର୍ଯ୍ୟାନୁଷ୍ଠାନ କରିଛନ୍ତି । 'ସାବତ ପୁଅ' ଗଳ୍ପରେ ଦୁଃଖୀଶ୍ୟାମର ମନସ୍ତତ୍ତ୍ୱ ଚିତ୍ରଣ କରିବାରେ ଲେଖକ କୃତକାର୍ଯ୍ୟ ହୋଇଛନ୍ତି ।

ଗଳ୍ପମାଳାର ପ୍ରତ୍ୟେକ ଗଳ୍ପରେ ଲେଖକ ସାମାଜିକ ଦୋଷ ଦୁର୍ବଳତା ପ୍ରକାଶ କରିବା ସଙ୍ଗେ ସଙ୍ଗେ ବାସ୍ତବତା ଓ କଳ୍ପନା ବିଳାସିତାର ସମ୍ମିଶ୍ରଣରେ ପାଠକମାନଙ୍କ ମନୋରଞ୍ଜନ କରିବା ନିମିତ୍ତ ଯଥେଷ୍ଟ ଚେଷ୍ଟା କରିଛନ୍ତି ।

'ପୁଅାଣିଘର' ଗଳ୍ପ ସଙ୍କଳନରେ 'ପ୍ରଗତି', 'ପ୍ରେମର ଉଚ୍ଛ୍ୱାସ' ଓ 'ପୁଅାଣି ଘର' ନାମକ ୩ଗୋଟି ଗଳ୍ପ ସ୍ଥାନ ପାଇଛି । ଏହି ତିନୋଟି ଗଳ୍ପରେ ସାମାଜିକ ଦୋଷ ଦୁର୍ବଳତାର ଚିତ୍ର ପ୍ରକାଶ ପାଇଲେ ହେଁ ଗଳ୍ପଗୁଡ଼ିକର ଆଙ୍ଗିକ ବିଶେଷତ୍ୱ ବିଶେଷ ଭାବରେ ନାହିଁ । 'ପ୍ରଗତି' ଗଳ୍ପରେ ଲେଖକ କୌଣସି ନୂତନତ୍ୱ ସୃଷ୍ଟି କଲାପରି ମନେ ହୁଏ ନାହିଁ । 'ପ୍ରେମର ଉଚ୍ଛ୍ୱାସ' ଗଳ୍ପରେ ସେହିପରି ଲେଖକଙ୍କର କଳ୍ପନା-ପ୍ରବଣତା ବିଶେଷ ଭାବେ ପ୍ରକାଶ ପାଇଥିଲେ ହେଁ ଗଳ୍ପର ବିଶେଷତ୍ୱ କିଛି ନାହିଁ । 'ପୁଅାଣିଘର' ଗଳ୍ପରେ ସେହିପରି ଲେଖକ କଥାବସ୍ତୁର ଋଜୁତା ଆଡ଼କୁ ଦୃଷ୍ଟି ନ ଦେଇ ଜଟିଳ କରି ଦେଇଛନ୍ତି । 'ପୁଅାଣିଘର' ସହିତ ଆମ ସମାଜର ମୁନାଫାଖୋର ମାଡ଼, ରାଜମାଡ଼କୁ ଲେଖକ କଥାବସ୍ତୁରେ ସଂପୃକ୍ତ କରି ଗଳ୍ପର ସୌନ୍ଦର୍ଯ୍ୟ ରକ୍ଷା କରିବାରେ ଅସମର୍ଥ ହୋଇଛନ୍ତି ।

'ନଅଟି ଗଳ୍ପ' ଗଳ୍ପ ସଙ୍କଳନରେ ରିକ୍‌ସାବାଲା, ଅନ୍ଧଛନ୍ଦ, କାଚ ବଜ୍ରକର, ପରିଚୟ, ପୋଲ ଉନ୍ମୋଚନ, ପାଷାଣର ଭାଷା, ସେବକର ଶବ, ବାଁ ଡାହାଣ ଓ ବିଦାୟ ନାମକ ୯ଟି ଗଳ୍ପ ସ୍ଥାନ ପାଇଛି । 'ରିକ୍‌ସାବାଲା' ଗଳ୍ପରେ ମଦନ ଓ ଚଂପା ଦୁଇଟି ଚରିତ୍ର ଜରିଆରେ ଲେଖକ ଯୁବପ୍ରାଣର ଏକ ଅପୂର୍ବ ରୂପରେଖ ପ୍ରଦର୍ଶନ କରିଛନ୍ତି । ଅବସ୍ଥା ଚକ୍ରରେ ପଡ଼ି ମଦନ ରିକ୍‌ସା ଟାଣିଛି ଓ ଚମ୍ପା ଧାଈ କାର୍ଯ୍ୟ କରିଛି । ପରସ୍ପରର କାର୍ଯ୍ୟ ପରସ୍ପର ପାଖରେ ଅଜ୍ଞାତ ରହିଛି । ଦୁଃଖ ଦୁର୍ଦ୍ଦଶାରେ ପଡ଼ି ମଧ୍ୟ ସେମାନେ ଭାଙ୍ଗି ପଡ଼ି ନାହାନ୍ତି । ମଦନ ଓ ଚମ୍ପା ଚରିତ୍ର ଆଧୁନିକ ଯୁଗର ଯୁବକ ଓ ଯୁବତୀମାନଙ୍କୁ ଆଦର୍ଶ ପଥ ଦେଖାଇବାର ଦୁଇଟି ଉଦାହରଣ । 'ଅନ୍ଧଛନ୍ଦ' ଗଳ୍ପଟି ଗୋଦାବରୀଶଙ୍କ

ସମସ୍ତ ଗଳ୍ପ ସୃଷ୍ଟି ମଧ୍ୟରେ ଏକ ଅନବଦ୍ୟ ସୃଷ୍ଟି । ରାଜନୀତିକ ନାଟ ଚମତ୍କ ଭିତରେ ନେତା ବାହାଦୁରୀ ନିଏ, 'ସରକାରୀ କର୍ମଚାରୀ ପୂଜାପାଏ, ମୁନାଫାଖୋର ବ୍ୟବସାୟୀ ମୁନାଫା ଉଠାଏ; ମାତ୍ର ଦରିଦ୍ର ଜନ ସାଧାରଣ ହୁଅନ୍ତି ଦୁର୍ଭିକ୍ଷର ଶିକାର । ଏହି ଗଳ୍ପରେ ଲେଖକଙ୍କର ବାସ୍ତବ ଅନୁଭୂତି ବିଶେଷ ଭାବରେ ପ୍ରକାଶ ପାଇ-ଥିବାରୁ ଗଳ୍ପରେ ବାସ୍ତବତା ପାଠକ ପ୍ରାଣକୁ ସ୍ପର୍ଶ କରେ । ସୀତାର ଜୀବନ ଓ ତାର ସନ୍ତାନର ଜୀବନ କରୁଣ ଭାବରେ ଏହି ଅବସ୍ଥାରେ ଶେଷ ହୋଇଛି ଏବଂ ଏ ଦୁହିଙ୍କର ଜୀବନର କରୁଣତା କରୁଣ ଭାବରେ ପ୍ରକାଶ ପାଇଛି, ତାହାହିଁ ଗଳ୍ପର ବିଶେଷତ୍ୱ । 'କାଚ ବଜ୍ରକର' ଗଳ୍ପଟିରେ ଲେଖକ ମନୁଷ୍ୟମନର ପ୍ରବୃତ୍ତିର ଗୋଟିଏ ବାସ୍ତବଚିତ୍ର ଦେଇଛନ୍ତି । କିଶୋର ବାବୁ, ଶାନ୍ତି ଦେବୀ ଓ କଲ୍ୟାଣୀ ତିନି ହେଁ ଯାକ ଶେଷରେ ଅନୁଭବ କରିଛନ୍ତି ଯେ, ଜୀବନରେ ପ୍ରବୃତ୍ତିର ଗତି ଅବାଧ ଏବଂ ପରିଣତି କେବଳ ଦୁଃଖ । ପ୍ରେମକୁ ବିଶେଷ ଭାବରେ ଅବଲମ୍ବନ କରି ଗଳ୍ପଟି ଲିଖିତ । 'ପରିଚୟ' ଗଳ୍ପରେ ଲେଖକ ଗୋପବନ୍ଧୁଙ୍କ ଜୀବନର ଏକ ବାସ୍ତବ ଘଟଣାର ରୂପାୟନ କରିଛନ୍ତି । ଗୋପବନ୍ଧୁ ଦାଢ଼ୀ କାଟି ପକାଇଥିବା ସମୟରେ ଯାଜପୁରରେ ବନ୍ୟାସମୟରେ ସେବା କାର୍ଯ୍ୟ କରିବାକୁ ଯାଇଥିବା ବେଳେ ଗଣେଶ ନାମକ ଜଣେ ଯୁବକଙ୍କ ସମ୍ପର୍କରେ ଆସିଛନ୍ତି । ମାତ୍ର ଗୋପବନ୍ଧୁଙ୍କୁ ସେ ଚିହ୍ନି ନାହାନ୍ତି । ଗୋପବନ୍ଧୁଙ୍କୁ ସେ କେବଳ ଆଗନ୍ତୁକ ଭାବରେ ଜାଣିଛନ୍ତି । ଗୋପବନ୍ଧୁଙ୍କୁ ଦେଖିବା ନିମିତ୍ତ ଆଗନ୍ତୁକଙ୍କ ସହିତ ପୁରୀରେ ସେ ସାକ୍ଷାତ କରିଛନ୍ତି ଏବଂ ଶେଷରେ ଜାଣିବାକୁ ପାଇଛନ୍ତି ଯେ, ସେହି ଆଗନ୍ତୁକ ହିଁ ଗୋପବନ୍ଧୁ । 'ପୋଲ ଉନ୍ମୋଚନ' ଗଳ୍ପଟିରେ ଲେଖକ ସରକାରୀ ନିର୍ମାଣ ବିଭାଗର କାର୍ଯ୍ୟ

କଳାପର ପ୍ରତ୍ୟକ୍ଷ ରୂପ ପ୍ରକାଶ କରିଛନ୍ତି । ପୋଲ ନିର୍ମିତ ହେବା ନିମିତ୍ତ ସରକାରୀ ଟଙ୍କା ମଞ୍ଜୁର ହେବା ପରେ ସରକାରୀ କର୍ମଚାରୀ ଓ କଣ୍ଟ୍ରାକ୍ଟର କପରି ଲାଭ ଉଠାନ୍ତି, ତାହାର ଏକ ସ୍ପଷ୍ଟ ଚିତ୍ର ଏଥିରେ ପ୍ରକାଶ ପାଇଛି । ଗଳ୍ପରେ ନିର୍ମିତ ହୋଇଥିବା ପୋଲଟିକୁ ଉନ୍ମୋଚନ କରିବା ନିମିତ୍ତ ମନ୍ତ୍ରୀ ଆସିଛନ୍ତି । ଯେଉଁଦିନ ପୋଲ ଉନ୍ମୋଚନ ହେବାର କଥା, ସେଦିନ ପ୍ରବଳ ବର୍ଷା ହେତୁ ତାପର ଦିନକୁ ରହିଛି । ବର୍ଷା ଛାଡ଼ିଯିବା ପରେ ମନ୍ତ୍ରୀ ପୋଲ ଉନ୍ମୋଚନ କରିବାକୁ ଆସିଛନ୍ତି; ମାତ୍ର ପୋଲଟି ଉନ୍ମୋଚିତ ହେବା ପୂର୍ବରୁ ଭୁଷୁଡ଼ି ପଡ଼ିଛି । 'ପାଷାଣର ଭାଷା' ଏକ କପୋଳକଳ୍ପିତ କଥାବସ୍ତୁ ଉପରେ ଲିଖିତ । ଉତ୍କଳର କାରୁକାର୍ଯ୍ୟରେ ଜଣେ ବିଦେଶୀୟା ଯୁବତୀ କିପରି ମୁଗ୍ଧ ହୋଇ ଶେଷରେ ପ୍ରାଣ ହରାଇଛି, ତାହା ହିଁ ବର୍ଣ୍ଣିତ । ସେବତୀର ଶବ ୧୯୪୩ ମସିହାରେ କରାଳ ସମୁଦ୍ରର ଚିତ୍ର । ରାମଚନ୍ଦ୍ର କୁଡ଼ି କୁଡ଼ି ଶବଗଦା ଭିତରୁ ସେବତୀର ଶବକୁ ଖୋଜି ଖୋଜି ଶେଷରେ ସେବତୀ ଜୀବନର ସନ୍ଧ୍ୟା ସମୟରେ ତାକୁ ପାଇଛି ଓ ନିଜେ ଶବକୁ ଧରି ସମୁଦ୍ରରେ ଆତ୍ମହତ୍ୟା କରିଛି । 'ବାଁ ଡାହାଣ' ଗଳ୍ପରେ ଲେଖକ ଦୁଇ ଜଣଙ୍କର ଦ୍ୱନ୍ଦ୍ୱସନ୍ଧିର ବିପରୀତ ପରିଣତି ବର୍ଣ୍ଣନା କରିଛନ୍ତି । 'ବିଦାୟ' ଗଳ୍ପରେ ଲେଖକ ଜଗନ୍ନାଥର ବାଲ୍ୟାବସ୍ଥାର ଚିତ୍ର ଦେଇ ନରହରି ମହାନ୍ତିଙ୍କ ସହିତ ତାର ସମ୍ପର୍କ ପ୍ରକାଶ କରିଛନ୍ତି ।

'ନଅଟି ଗଳ୍ପ'ର ଗଳ୍ପଗୁଡ଼ିକ ୧୯୪୭ରୁ ୧୯୫୦ ମଧ୍ୟରେ ରଚିତ ଓ ପ୍ରକାଶିତ ହେଲେହେଁ 'ବାଁ ଡାହାଣ' ଗଳ୍ପଟି ୧୯୫୧ ମସିହାରେ ଲିଖିତ । 'ବିଦାୟ' ଗଳ୍ପଟି ଏହି ସମୟରେ ଲେଖା ହୋଇଥିବା ଜଣାପଡ଼େ । 'ନଅଟି ଗଳ୍ପ' ଲେଖକଙ୍କର ପରିଣତ ବୟସର ଲେଖା ହୋଇଥିବାରୁ ଲେଖକଙ୍କର ଓଡ଼ିଶାର ସାମାଜିକ

ଓ ରାଜନୈତିକ ଜୀବନ ସହିତ ସମ୍ପୃକ୍ତଗତ ଗଭୀର ଅନୁଭୂତି ପ୍ରତ୍ୟେକ ସ୍ଥଳରେ ପ୍ରକାଶ ପାଇଛି ।

## ୭-ଓଡ଼ିଆ ସାହିତ୍ୟରେ ଗୋଦାବରୀଶଙ୍କ ସ୍ଥାନ—

ସତ୍ୟବାଦୀ ଦଳର ଜଣେ ନିଷ୍ଠାପର କର୍ମୀ ଭାବରେ, ସ୍ୱାଧୀନତା ସଂଗ୍ରାମର ଜଣେ ସୈନିକ ଭାବରେ ବା ବିଚ୍ଛିନ୍ନ ଅଞ୍ଚଳର ଜଣେ ସଂଗଠକ ରୂପେ ଗୋଦାବରୀଶଙ୍କର ଜୀବନର ମହତ୍ତ୍ୱ ଆଲୋଚନା କରିବାର ସ୍ଥଳ ଏ ନୁହେଁ । ଓଡ଼ିଆ ସାହିତ୍ୟର ଜଣେ ଧୂରନ୍ଧର ସାର୍ଥକ ସ୍ରଷ୍ଟା ରୂପେ ତାଙ୍କର ମହତ୍ତ୍ୱ ଏଠାରେ ଲକ୍ଷ୍ୟ କରିବାର କଥା । ଆଧୁନିକ ଗୀତିକବିତାର ସ୍ରଷ୍ଟା ରୂପେ ସେ ଓଡ଼ିଆ ସାହିତ୍ୟର ଏକ ଅପ୍ରତିଦ୍ୱନ୍ଦ୍ୱୀ ଗୌରବର ଅଧିକାରୀ । ନାଟ୍ୟକାର ଭାବରେ ଜାତିର ସଂହତି ଓ ଗୌରବର ଚିତ୍ର ଅଙ୍କନ କରିବାରେ ଜଣେ ସାର୍ଥକ ସ୍ରଷ୍ଟା । ଉପନ୍ୟାସ ରଚନା କରିବାରେ ବିଦେଶୀ କଥାବସ୍ତୁର ଆବରଣରେ ସ୍ୱଦେଶୀ ବେଦନାର ଯଥାର୍ଥ ଚିତ୍ରଣ କରିବାରେ ପ୍ରତିଭାବାନ୍ । କ୍ଷୁଦ୍ରଗଳ୍ପ ସୃଷ୍ଟି କରିବାରେ ସାମାଜିକ ଦୋଷ ଦୁର୍ବଳତା ପ୍ରତି ତୀକ୍ଷ୍ଣ ଦୃଷ୍ଟି ପ୍ରୟୋଗ କରିବାରେ ତାଙ୍କର ଯେଉଁ ଅପୂର୍ବ ଶକ୍ତି ଥିଲା, ତାହା ଅନନ୍ୟସାଧାରଣ । ସର୍ବୋପରି ନିଜର ଆତ୍ମଚରିତ ଲେଖିବାକୁ ଯାଇ ତା ସହିତ ସମଗ୍ର ଓଡ଼ିଶାର ଅର୍ଦ୍ଧଶତାବ୍ଦୀର ବିବରଣ ଯେପରି ନିର୍ଭୀକ ଭାବରେ ସେ ଦେଇ ପାରିଛନ୍ତି, ତାହା କେବଳ ତାଙ୍କରି ପକ୍ଷରେ ହିଁ ସମ୍ଭବ । ଓଡ଼ିଆ ସାହିତ୍ୟରେ ସେ ଯେ ଏକ ସୁପ୍ରତିଷ୍ଠିତ ଆସନର ଅଧିକାରୀ, ଏ କଥା ଆମକୁ ସ୍ୱୀକାର କରିବାକୁ ହେବ ।

—*—